# ଭାତ

---

ଅଭିନବ ସଂସ୍କରଣ

୧୯୬୩

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ପ୍ରକାଶକ :—

ଷ୍ଟୁଡେଣ୍ଟସ୍ ଷ୍ଟୋର୍

କଟକ-୨

ମୂଲ୍ୟ ଟ ୨୲ ଦୁଇଟଙ୍କା

# କଥା ପଦେ

ଏଇ ଭାରତ ନଅଣ୍ଡି ଆରବେଳେ ଢେନେ ସଞ୍ଜାଟାରେ ବସାକୁ ଫେରୁଚ, ମନହେଲା ଲେଖିବି "ଭାରତ" । ସେଇଟା ଭାଦ୍ରବ ମାସ । ଲେଖା ଆରମ୍ଭ କରିଦେଲି । ବେଗେ କାମ ସାରିବା ଅଭ୍ୟାସ ମୋର ନାହିଁ । ଥୋକେ ବନ୍ଧୁଙ୍କ ମୁହଁର "ଅଳସୁଆ" ପଦଟା କେବଳ ମୋତେ ଚହ୍ଲାଏଁ । ବାକି କାଟେଁ, ବାଟେଁ, ଘନ୍ତେ, ଘୁଖେଁ, ପରଣେ ମୁଁ । ତା' ଭିତରେ ଗଲ୍ପ ଅଇଲା, ସାଙ୍ଗ ସାଥି, ଇଶନ୍ତଶ—ନାନା ଚହଳ ନେଇ ଚଳବାକୁ ହବ ମୋତେ । ଅସ୍ତ୍ରବଟା ତ ପୁଣି ମୋର ରକ୍ତ ସାଙ୍ଗରେ ମିଶା । ଏଇସବୁକୁ ବରୁଣ ମୁଁ ଅଳସୁଆ କ ନୁହେଁ ଭାବିଲେ ଭଲ ହୁଅନ୍ତା । ଗୁଡ଼, ମୁଁ ସେଥିକ ମନ ଦୁଃଖ ନ କରି ଆହୁରି ହସେଁ । ଭାରତ ଲେଖା ଗୃଲଥାଏ—କଟା ଗୃଲଥାଏ । କଏ କେମିତି "ଭାରତ" ନାଆଁଟା ଶୁଣି "ଗ୍ରେଟି"ର ନକଲ ବୋଲି ଭ କହି ପକେଇଲେ । ସେତେବେଳକୁ ମୋଟେ ଲେଖା ୪/୬ ଫାଳ ହୋଇନାହିଁ । ଆମ ଏଠି ଥୋକେ ଆଗତକୁହା ଏମିତି ଅଛନ୍ତି, ନଈ ନ ଦେଖୁଣୁ ଲଙ୍ଗଳା ହୁଅନ୍ତି । ଗ୍ରେଟି ଆଉ ଭାରତ—ଲେଖା ଆକାଶ ପାତାଳ ପ୍ରଭେଦ । ତଥାପି ଗୋଟେ ରକମର ମୁହଁ ତାଙ୍କର —ସେ କହିବେ;—କାନ ଅଛୁ ଆମେ ଶୁଣିବା ।

କାର୍ତ୍ତିକ ବେଳକୁ ଓଡ଼ଶା ଥିଏଟର୍ସ ଦଳ ନେଇ ପୁରୀ ଗଲି ଗୋଟେ "ଡକବା"ରେ । ସେଠି ମଝିରେ ମଝିରେ ଭାରତ ଲେଖା ହଉଥାଏ । ଆଠଦିନ, ଦଶଦିନ, ପନ୍ଦର ଦିନରେ ଗୋଟେ ଦୃଶ୍ୟ ଲେଖା ହେଇ ହେଇ କଟକ ବାହୁଡ଼ିବାବେଳକୁ ଅଧାଅଧି

ବନ୍ଧ ସରିଚ । ବଡ ମହାନ୍ତ ( ଶ୍ରୀ ବଡହାନନ୍ଦ ମହାନ୍ତ ) ହିନେ ଟିକଲ କଲେ । ମୋତେ ଶମ୍ଭୁଟି ଦବା ଅଭ୍ୟାସ ତାଙ୍କର ଟିକଏ ଅଛି । ବନ୍ଧଟା ତାଙ୍କ ଗୁବୁକ୍ ଖାଇ ବେଗେ ବେଗେ ସାରି, ଅଭିନୟ ଶିକ୍ଷା ଦେବା ଆରମ୍ଭ କଲ । ସଙ୍ଗେ ସଙ୍ଗେ ବଡ ମହାନ୍ତ ମୋତେ ପଦେ ଅଧେ କହୁଥାନ୍ତି । ମୁଁ ବ ତାଙ୍କୁ ପରସ୍ତେ ଲେଖାଏଁ ଝାଡ଼ିବାକୁ ଛାଡ଼ି ନାଇଁ । ଏଇମିତି ହେଇ ଅଭିନୟ ଆରମ୍ଭ ହେଲା ।

ଭଉଣୀ ସରଳା ଦେଈ ( ମୁଁ ଡାକେ ଦୁଃଖୀ ) ମୋ ଅନୁରୋଧରେ "ଭୂତ" ଅଭିନୟର ଶୁଭ ଦେଲେ । ଆଗେ ଆମ ଏଠି ଗୋଟେ ନାଟକ ତିନଦିନ ଗ୍ଭଲଲେ ବଡ଼ କଥା ବୋଲି କହୁଥିଲେ । ଭୂତ ଗ୍ଭଲିଲା ୧୦୮ ଘଣ୍ଟା । ସେତେବେଳକୁ ଡିସେମ୍ବର ମାସ ୧୯୦୪ ମସିହା । ମାଟି ଚକଟି ପ୍ରତିମା ଗଢ଼ିଥିଲି ଯାହାଙ୍କୁ ସେଇମାନେ ହେଲେ ଭୂତର ପରଶୁଣିଆଁ । ବଡ଼ ଦହଗଞ୍ଜ ଭିତରେ ଘର ଫୁଟିଚ—ପରଶା ବ ହୋଇଚ । ଲୋକ ଦେଖାକୁ ମୁଁ ବଡ଼ ମଉଜରେ ଥାଏଁ । ମାଟି ଚକଟା କୁମ୍ଭାରର ଯେଉଁ ସୁଖ—ଅନୁମାନ କରନ୍ତୁ—ସେ କଥାଟା ଏବେ ମୋ ପିଲାଏ ଟିକଏ ଟିକଏ ଅଙ୍ଗେ ଲିଭେଇଲେଣି । ମୁହଁରେ ନ କହନ୍ତୁ ପଛେ, ମନେ ମନେ ନଜେ ବୁଝୁଥିବେ । ଘର-ଭୂତ ପରକୁ ବାଡ଼ି ଏ ବୁଢ଼ାଟାକୁ ଆଡ଼େଇ ଦେଇ ସେମାନେ ଗଲେ ତୋଳିବାକୁ ଦେଉଳ । ବାହାରେ ନାନା କଥା ଶୁଣାଗଲା । ମିଛ ସତର ସାକ୍ଷୀ ଉପରେ ଅଛନ୍ତି । ଭୂତ ଦେଶରେ ଚହଳ ଆଣିଲା । ମୋ ଜାତିପୁଅ ମୋତେ ଟାଣୁଆଁ ସଂବର୍ଦ୍ଧନା ମଧ୍ୟ କେଲେ । କାହାର ମନ କୁଣ୍ଠେ ମୋଟ ହେଲା-କାହା ଗ୍ଳାନି ସହିଲା ନାହିଁ । ବାକି ମୋ କାମ ମୁଁ କଲି, କରୁଚି-କରୁଥିବି ମଲାଯାଏ । ଆମ ଏଠି ତ ଧଳାକୁ କଳା କହିବାକୁ ବେଶି ସମୟ

ଲାଗେ ନାହିଁ—ଦୁଃଖ କାହିଁକି ? ମୋ ପିଠିରେ ହାତ ମାରିଛନ୍ତି ଅନେକ ବନ୍ଧୁ—ଯାଜପୁରିଆ ଭାଇ, କେନ୍ଦ୍ରାପଡ଼ିଆ ଭାଇ, କଟକ ମଜଦୁର ସଙ୍ଘ ମୋତେ ଭାଇ ବୋଲି ଗଣିଛନ୍ତି—ମୁଁ ଧନ୍ୟ—ତାଙ୍କ ପାଖେ କୃତଜ୍ଞ । ବିଶେଷ ଭାବରେ ଶ୍ରୀମତୀ ଲତିକା ଦେଈ; ନିଶାମଣି ଦେଈ ଓ ଶ୍ରୀଯୁକ୍ତ ବୀରବାବୁ ( ବର୍ତ୍ତମାନ ଜଷ୍ଟିସ୍ ରାୟ ) ମୋତେ ସ୍ନେହ ଦେଇ, ଉତ୍ସାହ ଦେଇ ଆଶୀର୍ବାଦ କରିଛନ୍ତି । ମୁଁ ତାଙ୍କମାନଙ୍କ ପାଖେ ଚିରଋଣୀ । କାଗଜ ପତ୍ର ବେଳ ନ ହେଉଥିଲେ ଭାଇ ନାରଣ ଦାସେ ( ଶ୍ରୀ ନାରାୟଣଚନ୍ଦ୍ର ଦାସ—ପ୍ରକାଶକ ) ଅନେକ ଆଗରୁ ବହିଟି ବାହାର କରିଥାନ୍ତେ, ପାରିଲେ ନାହିଁ । ପ୍ରଥମ ସଂସ୍କରଣ ସେ ଛାପିବାକୁ ମୁଁ ଅନୁମତି ଦେଇଚି ।

"ଭାତ" ଅଭିନୟ ପରେ ଘରକୁ ଟିକିଏ ନୂଆ ପୁରୁଣା କରି ଲିପାପୋଛା କରିଦବାକୁ ମୋତେ ପଡ଼ିଲା । କହିବି ତ ଏଇଟା କୁମ୍ଭାରର ବେଉସା ।

ଧକ୍କାରେ ବି ସୁଖ ଥାଏ । ଅଳସୁଆ ପଣ ଭାଙ୍ଗିଯାଏ, ତା ଛଡ଼ା ଆଉ ଥୋକେ ନୂଆ ଗଢ଼ା ହୁଅନ୍ତି । ଦେଶର ମଙ୍ଗଳ ସେଇତକ ହେଲା ।

ଗରିବ ମୁଁ, ପଲଉ ମାଂସ ପରଶିବାର ବଳ ନାହିଁ । ଖଣ୍ଡିଆ ଚୂଳ, ନୁଖୁରା ଭାତ—ଏଇତକ ମୋର ସମ୍ପତ୍ତି । ସ୍ନେହରେ ବାଢ଼ିଥିଲି ମୋ ଭାଇ ଭଉଣୀ ଆଦରରେ ନେଇଚନ୍ତି—ମୋ ଶ୍ରମ ସାର୍ଥକ ।

ସେଇ ଭାଇ ଭଉଣୀଙ୍କି ଆଜ ଜଣାଉଚ ମୋର ପ୍ରାଣଭରା କୃତଜ୍ଞତା । ଯେତେଦିନ ବଞ୍ଚିବ ତାଙ୍କ ସେବାରେ ଜୀବନଟା କଟିଯାଉ — ଏତିକ ମୋର ମାଆ ପାଖେ ଅଳି ।

ସେବକ
**କାଳୀଚରଣ**

---

୨ୟ ସଂସ୍କରଣ

ଉତ୍କଳ ବିଶ୍ୱବିଦ୍ୟାଳୟର କର୍ମକର୍ତ୍ତାମାନେ 'ଭାତ'କୁ ଇଣ୍ଟରମିଡ଼ିଏଟ୍ ଶ୍ରେଣୀର ପାଠ୍ୟ ନିର୍ବାଚନ କରିଛନ୍ତି, ମୁଁ ସାଧୁବାଦ ଜଣାଉଛି । ଦୁଇ ବର୍ଷ ପରେ ଭାତର ଦ୍ୱିତୀୟ ସଂସ୍କରଣ ପାଇଁ ପୁଣି ପୂର୍ବ ପ୍ରକାଶକଙ୍କୁ ମୁଁ ଅନୁମତି ଦେଇଛି । ଭାତକୁ ଆଦର କରିଛନ୍ତି ଯେଉଁମାନେ ତାଙ୍କୁ କୃତଜ୍ଞତା ଜଣାଉଛି ।

ନାଟ୍ୟକାର
୧୯୪୯

# ନାଟ୍ୟକାରଙ୍କ ସମ୍ବନ୍ଧେ ଦୁଇପଦ

'ଭାତ' ନାଟକର ପ୍ରାରମ୍ଭିକ ଉନ୍ମୋଚନା ହୋଇଥିଲା ମୋ'ର ଦ୍ୱାରା ବୋଲି ଶତ ରଜନୀର ଉଦ୍‌ଯାପନର ଶୁଭ ଅବସରରେ ପ୍ରଥିତ-ଯଶା ଉତ୍କଳର କବିମୌଳିମଣ୍ଡନ ନାଟ୍ୟକାର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ଗୌରବମୟ କୃତିତ୍ୱ ନେଇ ମୁଁ ଆତ୍ମପ୍ରସାଦ ଅନୁଭବ କରୁଛି ।

ଉତ୍କଳର ନାଟ୍ୟକାରଙ୍କ ରଚନା ମଧ୍ୟରେ ନାଟ୍ୟାଗ୍ରଣୀ କାଳୀ-ଚରଣଙ୍କ ନାଟକ ସବୁର ଉପରେ । ନାଟକ ତାଙ୍କର କ୍ଷୁଦ୍ର,ବିଷୟବସ୍ତୁ ଗ୍ରହଣର ପଥ ବନ୍ଧୁର, ଜଟିଳ ନୁହେ । ନଗ୍ନ ବାସ୍ତବତା ଉପରେ 'ଭାତ' ନାଟକର ଭିତ୍ତି ଗଠିତ ହୋଇଥିବାରୁ ଏହା ଶତରଜନୀର ଉଜାଗର ପାଳି ଜାଳିପାରିଛି । ବାସ୍ତବତାକୁ ଭିତ୍ତି ନ କରି ନାଟକ ଛୁଡ଼ାକରି ହୁଏନାହିଁ ସତ୍ୟ; କିନ୍ତୁ ଏହା ବୋଲି ବାସ୍ତବତା ନାଟ୍ୟ – ରଚନାର ଏକମାତ୍ର ସାରକଥା ନୁହେଁ । ଅବାସ୍ତବତା ନଥିଲେ ବା ଅପ୍ରତ୍ୟକ୍ଷ ମାନବ ମନର ଅବସ୍ଥାକୁ ସୁକୌଶଳ ସୁନ୍ଦର ନିପୁଣତାର ଦୃଶ୍ୟ ନ କରିପାରିଲେ ନାଟକ ହୁଏନାହିଁ । ଏହି କାରଣରୁ ଦ୍ୱାପର ଯୁଗର ବୃନ୍ଦାବନରେ ରାସଲୀଳାର ଅଭିନୟ ଭାରତ-ବର୍ଷର ମନକୁ ଏବେ ନବଉଦ୍ଭବରେ ପ୍ରଭାବିତ କରେ । ରାମାୟଣ, ମହାଭାରତ ଉପାଖ୍ୟାନ ଉପରେ ନାଟକ ରଚିତ ହୋଇଥିଲେ ତାହା ପୁରୁଣା ଲାଗେନାହିଁ । କିନ୍ତୁ, କେବଳ ଅବାସ୍ତବତା ନେଇ ମଧ୍ୟ ନାଟକ ରଚନା ହୁଏନାହିଁ । କାଳୀବାବୁ "ଜୟଦେବ" ନାଟକରେ

ଯେପରି ମନୁଷ୍ୟ ଜୀବନର ଧ୍ୟେୟ ଓ ଶ୍ରେୟର ଅପାର୍ଥିବତାକୁ ବାସ୍ତବତାର ପୃଷ୍ଠଦେଇ ଭାବୋତ୍କର୍ଷ ଦେଖାଇ ପାରିଛନ୍ତି ଓ 'ବେକାର' ଭଳି ନାଟକ ବସ୍ତୁତାତ୍ତ୍ୱିକ ଦୃଶ୍ୟନାଟ୍ୟରେ କିମ୍ବା କୌଶଳର ପରାକାଷ୍ଠାରେ ସିଦ୍ଧିଲାଭ କରିଅଛନ୍ତି, ଗୀତ ନାଟକ ଏବଂ ଉଭୟପୂର୍ବବତ ଅନୁପୂରକ ହେବାଦ୍ୱାରା ନାଟ୍ୟାଚାର୍ଯ୍ୟ ଶ୍ରୀ କାଳୀଚରଣଙ୍କୁ ଗୋଟିଏ ପରମ ସିଦ୍ଧି ଦେଇଛି । ଏହି ନାଟ୍ୟରଚକ କଳାମୟ ସାହିତ୍ୟ ଓ ସଙ୍ଗୀତ ବାଦ୍ୟର ଅଭିନବ ସାଧନାରେ ଉତ୍କଳ ଭଳି ଦରିଦ୍ର ଓ ଦୁର୍ଭାଗିନୀ ଜନନୀର ସିଦ୍ଧସାଧକ । ସେ ଜନ୍ମଭୂମି ଜନନୀର ବରପୁତ୍ର । ଏ ଯୁଗରେ, ଏ କାଳରେ ତାଙ୍କଭଳି ସିଦ୍ଧସାଧକ ଜୀବିତ କୃଷ୍ଣକଳା-ସେବକ ପୁରୁଷଙ୍କ ସମକକ୍ଷ ହୋଇ ଦ୍ୱିତୀୟ କୃଷ୍ଣସାଧକ ଆଜି ସମ-ସାମୟିକ କେହି ନାହାନ୍ତି କହିଲେ ବାହୁଲ୍ୟ ହେବ ନାହିଁ । ସେହି କାରଣରୁ ତାଙ୍କ ସମ୍ବନ୍ଧରେ ପ୍ରଶଂସା କରିବାକୁ ସଙ୍କୋଚ ଲାଗେ । କାରଣ ତାଙ୍କର ଯଥାର୍ଥ ଦାବୀ କେତେ ତାହାର ପରିମାପକ ତାଙ୍କ ଜୀବଦ୍ଦଶାରେ କଳିବା ଅସମ୍ଭବ । କେବଳ ମନେହୁଏ ଯାହା ଓ ଯେତିକ ତାଙ୍କ ସମ୍ବନ୍ଧରେ କହିବୁଁ ହୁଏତ କମ୍ କରି କୁହାହେବ ।

ଆମ ଓଡ଼ିଆ ଦେଶରେ ନାଟକର ସମାଲୋଚନା ହୁଏନାହିଁ । ଖଟେଇ ବଗୁଲେଇ ଛିଗୁଲେଇ ହବାକ କଣ୍ଟାବାଡ଼ରେ ଲୁଗା ପକାଇ ଝିଙ୍କାରି ହୋଇ ଟାଣି କଳକରିବା ଓ ଶୋଧିବାକୁ ଆମ୍ଭେମାନେ ମନେକରୁଁ ସମାଲୋଚନା ବା ଆଦର୍ଶ; କାରଣ ସାହିତ୍ୟ, ନାଟକ, କାବ୍ୟ, ଚିତ୍ର, ସଙ୍ଗୀତ ବାଦ୍ୟାଦି ସମାଲୋଚନା କରିବାକୁ ଗୋଟିଏ ମାନଦଣ୍ଡ ଏ ପର୍ଯ୍ୟନ୍ତ ନିରୂପିତ ହୋଇନାହିଁ । ତାର କାରଣ ଗାନ୍ଧର୍ବ-ବିଦ୍ୟାକୁ ଜୀବନର ସମ୍ବଳ ଓ ଶ୍ରେଷ୍ଠ ସାଧନା ବୋଲି ଏ ଦେଶର ବହୁ କଳାକାର ଗ୍ରହଣ କରି ସାଧନାରେ ସିଦ୍ଧି ଲଭିନାହାନ୍ତି । ସେହି

କାରଣରୁ ଏ ସମ୍ବନ୍ଧରେ General standard, ଗୋଟେ ଲୋକ ଶୁଣିବା ବାଛିବା ପାଇଁ ତିଆରି କରିନାହାନ୍ତି । ଦେଖିବାକୁ ମିଳେ ଶସ୍ତା ଦରର ନାଟକର ମଧ୍ୟ ଦର୍ଶକ ହୋଇଥାନ୍ତି । ବସ୍ତ୍ରର ଓ ନଗ୍ନ ବିଭତ୍ସ ରସରେ ଉଚ୍ଛ୍ୱଳ ପଡ଼ୁଥିବା ଦୃଶ୍ୟ ଅଭିନୟମାନଙ୍କରେ ହାତତାଳି ହୁଏ ପ୍ରଚୁର । ଆମର ତଥାକଥିତ ରସଗ୍ରାହୀ ବା ରସିକ ସୁଧୀ ବୋଲାଉ-ଥିବା ବ୍ୟକ୍ତିଗଣଙ୍କ ରୁଚି ଏତେ ସ୍ଥୂଳ ଓ ଜଡ଼ ଯେ, ନାଟ୍ୟକାରଙ୍କର ରଚନାରେ ସୂକ୍ଷ୍ମାଂଶ ଗ୍ରହଣ କରିବାକୁ ସେମାନେ ବଡ଼ କୁଣ୍ଠିତ ହୁଅନ୍ତି । ଦେଶ, କାଳ, ପାତ୍ରର ସୀମାବଦ୍ଧ ଖଣ୍ଡିକୁ ଅତିକ୍ରମ କରିବା କବିଚନ୍ଦ୍ରଙ୍କ ପକ୍ଷରେ ସର୍ବଥା ସମ୍ଭବ ନୁହେଁ । କିନ୍ତୁ ଏହି ସୀମିତ ପରିବେଷ୍ଟନୀରେ ସେ ଜାତିକୁ ଯେ ହସ କାନ୍ଦରେ ଭସେଇ ନେଉଛନ୍ତି, ଏଥିପାଇଁ ତାଙ୍କୁ ବାହାଦୁରୀ ଦେବାକୁ ହୁଏ । ଆବହାଉଆ, ଦେଶ, କାଳ ପାତ୍ରକୁ ବଦଳାଇ ସୁନ୍ଦର ଓ ଶିବ ସତ୍ୟଙ୍କର ସୀମିତ ଶକ୍ତିରେ ସମ୍ଭବପର ନୁହେଁ—ଏହାର ବଡ଼ କାରଣ ସବୁଠାରୁ ବିଶେ ଅର୍ଥାଭାବ, କାରଣ ମନୁଷ୍ୟର ଜୀବଧର୍ମ ବା ପେଟରୁ ଅର୍ଥ ବନ୍ଧନ ନ ପଡ଼ିଲେ ଦେଶର କଳାକାରମାନଙ୍କର କଳସାଧନାକୁ ଜୀବନର ସାରଧର୍ମ କରି ସଙ୍ଗୀତ, ସାହିତ୍ୟ, ନାଟକ, ନୃତ୍ୟ, ବାଦ୍ୟ ଓ ଚିତ୍ର ପ୍ରଭୃତି କଳାର ପ୍ରୟୋଜନୀୟ ବିକାଶ ଆଦୌ ସମ୍ଭବପର ହୁଏ ନାହିଁ । ସେଥିପାଇଁ ଧନଶାଳୀ ଦେଶର କଳାକାର, ପରାଧୀନ ଦରିଦ୍ର ଦେଶର କଳା-କାରଙ୍କର ପାର୍ଥକ୍ୟ ଅତିରିକ୍ତ ଫାଙ୍କରେ ଧରିବାକୁ ହୁଏ । କିନ୍ତୁ ଆମ ଦେଶର ଯେପରି ସାଧାରଣଙ୍କର ଅବସ୍ଥା ଓ କାର୍ଯ୍ୟକାରୀ ଆତ୍ମାର ସ୍ୱାଧୀନ ବନ୍ଧନମୁକ୍ତ ବିକାଶ ପଥରେ ଯେ ପ୍ରଚଣ୍ଡ ରାଜନୈତିକ ବାଧାବିଘ୍ନ ବେୟନେଟ୍‌ର ସଙ୍ଗୀନ୍ ମୁନ ସାମନାରେ ଅମିତ ସଙ୍କୁଚିତଭାବରେ ତାକୁ ଅଯଥା ଖର୍ବ କରିବାକୁ ହୋଇଚି, ସେହି ଦୃଷ୍ଟିରୁ ବିଚାରିଲେ କବିଚନ୍ଦ୍ର କାଳୀଚରଣଙ୍କ ନିକଟରେ ଉତ୍କଳର ନାଟ୍ୟାମୋଦୀମାନେ

ନଶ୍ଚୟ କୃତଜ୍ଞ ବୋଧ କରିବେ । ଆମ ଦେଶରେ କେତେକ ନାଟ୍ୟକାରଙ୍କର ରଙ୍ଗମଞ୍ଚ ସମ୍ବନ୍ଧରେ ଅଭିଜ୍ଞତାର ଅଭାବ ଲକ୍ଷିତ ହୁଏ । ପୁଣି ଭାଷାର ପରିବର୍ତ୍ତନଶୀଳତା ସମ୍ବନ୍ଧରେ ଜ୍ଞାନ ଅଗଭୀର ଥିବାରୁ ଲଳିତ ଶବ୍ଦ ଯୋଜନାରେ ନାଟକ କେବଳ ପ୍ରାଣବନ୍ତ ହୁଏ ବୋଲି ବିଶ୍ୱାସ ଥିବାରୁ ନାଟକ କେବେହେଲେ ରଙ୍ଗମଞ୍ଚ ଦେଖେ ନାହିଁ । ନାଟକ-ସାହିତ୍ୟ, କାବ୍ୟ-କବିତା ଗଳ୍ପ, ଉପନ୍ୟାସଠାରୁ ପୃଥକ୍ ଜିନିଷ ଓ ସେହି ସମ୍ବନ୍ଧରେ ପ୍ରତିଯୋଗୀ ଲେଖାର ଶବ୍ଦ ଗୃହୀତ ସ୍ୱତନ୍ତ୍ର । ନାଟକର ଏ ସମ୍ପର୍କରେ ସ୍ଥାନ ନାହିଁ । ତାହାପାଇଁ Flexibility ବା ସଂପ୍ରସାରଣ ଦରକାର । କାରଣ ନାଟକ movement, action, motivation କ୍ରିୟା ପରିବର୍ତ୍ତନ ଉପରେ ତିଷ୍ଠେ । ଚିତ୍କାର କରିଗଲେ ବା ତା'ଦ୍ୱାରା ତାଳିବାଜ 'ବାହାବା' ପାଇଲେ ନାଟକର ଆଦର୍ଶ ହୁଏନାହିଁ । ଆମ ଦେଶର କେତେକ ନାଟ୍ୟକାରଙ୍କ ପାଦପାଦୀ କଥା କହନ୍ତି ନାହିଁ—ଆକାଶଫଟା ଚିତ୍କାର କରନ୍ତି । ପ୍ରାଚୀନତା ନବୀନତାର ସ୍ଥାନ ବା ତାକୁ ବଞ୍ଚାଇବାର ପ୍ରୟାସ ସ୍ଥୂଳ ନାଟକୀୟ ବିଷୟବସ୍ତୁ ନୁହେଁ । ମାନବପ୍ରାଣରେ ଯେ ଗଭୀର ଶୋକ, ଦୁଃଖ, ହର୍ଷ ପ୍ରୀତି ରହିଛି, ତାହା ଫୁଟାଇବାକୁ ଶବ୍ଦାଳଙ୍କାର ଆବଶ୍ୟକ ନୁହେଁ । ଏହି ତାପ ଓ ବ୍ୟଥା ଫୁଟାଇବାକୁ ଆମର ନିତି କଥାଭୁହା ଭାଷାର ଶବ୍ଦ ଯଥେଷ୍ଟ । ଏ ଦିଗରୁ 'ଭାତ' ନାଟକର ଲେଖା ଅନବଦ୍ୟ । ନାଟକକାର ହୃଦୟ ବେଗ ସଂଯମ ଅଭାବରୁ ଅଭିନୟ ଭିତରେ ଉପଦେଶ ଦେବାକୁ ଯାଇ ଅମିତ୍ରାକ୍ଷର ଛନ୍ଦରେ ଯେ ନୀତିଶିକ୍ଷା ଦେଇଥାନ୍ତି, କବିଚନ୍ଦ୍ରଙ୍କ ନାଟକରେ ତାହା ନାହିଁ । ଏହି ସଂଯମ ତାଙ୍କୁ ଶ୍ରେଷ୍ଠ ନାଟ୍ୟକାର କରିଛି । ନାଟ୍ୟକାର ଶିବ ସୁନ୍ଦର ସତ୍ୟମୟ ପ୍ରକାଶର ଆଦର୍ଶ ଥୋଇବ—ନୀତି ଶିକ୍ଷାଦେବା ପଣ୍ଡିତ ସେ ନୁହେଁ । ଦର୍ଶକ ଅଭିନୟରୁ ଶିଖିବ ନୀତିର ମାନଦଣ୍ଡ—

ବକ୍ତୃତାରୁ ନୁହେ । ନାଟକ ଲେଖାରୁ ମାହାତ୍ମ୍ୟ ଖୁବ୍ ବଡ଼ କଥା—ଏ Sense of proporation ଖୁବ୍ କମ କଳାବିତ୍ମାନଙ୍କର ଥାଏ—କାଳୀବାବୁଙ୍କର ତାହା ଅଛି ।

କାଳୀବାବୁଙ୍କ ସାହିତ୍ୟରେ ମୋର ପରିଚୟ—ତାଙ୍କର ମନ ସହିତରେ ମୋର ପରିଚୟ ବୋଲି । ତାଙ୍କର କୀର୍ତ୍ତି 'ଭାତ'ରେ ଆବଦ୍ଧ ରହିଲେ ହେବନାହିଁ, ତା ସହିତ 'ଦୁଧ'ଦରକାର ! ଦେହଠୁଁ ଚିତ୍ତ ଓ ପ୍ରାଣ ବଡ଼ । ସେହି ନୀତିରୁ ଘନଠୁଁ ତରଳ ବା Solid ଠୁଁ liquid ର କମ୍ପନ ଏ ଦୁନିଆଁରେ ବେଶି । ଦୁଧରେ ଯେ ଅମୃତ ରହିଛି, ସେହି 'ମାନସ-ଖାଦ୍ୟ' ଗ୍ରହଣ କରିବାକୁ ଦେଶରେ ବାତାବରଣ ସୃଷ୍ଟି କରିବା ଓ ପରିବେଷ୍ଟନୀ ବିସ୍ତାରକରିବା କାମ ତାଙ୍କ ଉପରେ ବାକି ଅଛି । ପୂର୍ବେ ଯେ ନାଟ୍ୟାଚାର୍ଯ୍ୟଙ୍କ ମତ ସହିତରେ ମୋର ପରିଚୟ କଥା ଲେଖିଛି, ସେହି ପରିଚୟ ମୋତେ ଜୀବନର ମଧ୍ୟାହ୍ନ ବା ସାୟାହ୍ନ କାଳରେ ମଧ୍ୟ ଭବିଷ୍ୟତ ପାଇଁ ଆଶାବାଦୀ କରିଛି, ଏହି କାରଣରୁ ଯେ—କାଳୀବାବୁ ତାଙ୍କର କଳାଦ୍ୱାରା ଜାତିର ଦୈହିକ-ପୁଷ୍ଟି ଆଡ଼କୁ କେବଳ ମନ ନ ଦେଇ, ମାନସିକ ପୁଷ୍ଟି ଓ ବିକାଶ ଆଡ଼କୁ ଲକ୍ଷ୍ୟ ରଖିବେ ।

ଆଜି ଏ ଦେଶରେ କଙ୍କାଳର ଶୋଭାଯାତ୍ରା ଚାଲିଛି, ମଶାଣି ଭୂଇଁକି । ଘରେ ଖୁଦ କୁଣ୍ଡା ବି ନାହିଁ, ଦେହରେ ଲୁଗା ନାହିଁ, ମନୁଷ୍ୟ ମନୁଷ୍ୟକୁ ପଶୁପରି ବ୍ୟବହାର କରି ତାର ରକ୍ତ ଶୋଷି ନିଜର ସ୍ୱାର୍ଥ ଓ ପୁଷ୍ଟି ସାଧନ କରୁଛି—କ୍ଷମତାର ଅପବ୍ୟବହାରରେ ।

କିନ୍ତୁ ଏ କ'ଣ ଚିରନ୍ତନୀ ? ଏହି 'ଚିରନ୍ତନୀ' ଆଡ଼କୁ ଆମ ନାଟ୍ୟାଚାର୍ଯ୍ୟଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ପ୍ରୟାସ କରୁଛି ମୁଁ, କାରଣ ମୋର ବିଶ୍ୱାସ, ବର୍ତ୍ତମାନ ଉତ୍କଳଖଣ୍ଡରେ 'ଚିରନ୍ତନୀ'କୁ ସୃଷ୍ଟି କରିବାର ସାହସ 'ଭାତ' ନାଟ୍ୟକାରଙ୍କ ଛଡ଼ା ଆଉ କାହାରିଠାରେ

ସମ୍ପଦପର ନୁହେଁ । ଉତ୍କଳର କଳାପ୍ରିୟ ପାଠକପାଠିକା, ନାଟ୍ୟାମୋଦ ନରନାରୀ ତାଙ୍କର ଅମୃତ ଲେଖନୀ ଆଢ଼େ ସନ୍ତୁଷ୍ଟ ହୋଇ ଗ୍ଣିଛନ୍ତି । ଏହି କ୍ଷେତ୍ରରେ ସାଧକ ତାର ଅନ୍ତର୍ଦୃଷ୍ଟି ପାତ କରି ଆତ୍ମାର,ଅମୃତର, ସନାତନ ସତ୍ୟର - ନିଜକୁ ପରୀକ୍ଷା:—ସେ ତା'ର ନିଜପାଇଁ ନା କୋଟି କଙ୍କାଳ—ମାଳିନୀ, କବନ୍ଧ—ବଳସିନୀ ବିଚ୍ଛିନ୍ନ ଉତ୍କଳର ଆଗାମୀ କାଳର ନରନାରୀଙ୍କପାଇଁ ଲେଖନୀ ଧରିବ ! ଆତ୍ମସ୍ଥନାଟ୍ୟ-କାର, ଧ୍ୟାନୀ, ମୌନୀ ଅନ୍ତର୍ଦୃଷ୍ଟି ବିବେକ ପୁରୁଷ ତାଙ୍କ ପଥ ନିର୍ଦ୍ଦେଶ କରିବ ।

ସ ।—ଶ୍ରୀମତୀ ସରଳା ଦେବୀ

ତା ୮ । ୧୧ । ୪୫



# ଆଉ ପଦେ

୧୯୪୫କୁ ୧୯୬୭ ଶେଷ—ଲାଗୁଛି ଯେମିତି ଗୋଟାଏ ଦୀର୍ଘ ଜୀବନ ବିତିଗଲାଣି—ଢେର୍ ଓଲଟ ପାଲଟ ହେଲାଣି ଦୁନିଆଁ । 'ଭାତ'ର ପରଶା ଢଙ୍ଗ ମଧ୍ୟ ବଦଳ ହେଲାଣି ।

ଏବେ ଜଣେ ଲେଖକ ଭାତ କଥା ଲେଖିଛନ୍ତି, 'ରୋଟି'ର ନକଲ ବୋଲି । ମୁଁ ପ୍ରଥମ ସଂସ୍କରଣରେ ମୋ କଥା ଲେଖିଛି । ଓଡ଼ିଶା ଥିଏଟର୍ସ ଚାଲୁଥିବାବେଳେ—ଏଣେ ନାଟକ ଲେଖା ହେଉଥାଏ, ତେଣେ ରିହର୍ସେଲ ଚାଲୁଥାଏ ଏବଂ ମୋର କେତେକ ଶୁଭାନୁଧ୍ୟାୟୀ ବନ୍ଧୁ ତା'ର ଆଲୋଚନା, ସମାଲୋଚନା କରୁଥାଆନ୍ତି ରିହର୍ସେଲ୍ ଦେଖି । ମୁଁ ତାଙ୍କମାନଙ୍କ ପରାମର୍ଶରେ ଆନନ୍ଦରେ କଟାଛଟା, ଅଦଳ ବଦଳ କରେଁ । ଏ ଅଭ୍ୟାସ ମୋର ଥିଲା ଏବଂ ଏବେ ବି ବ' ଧାଡ଼ି କିଛି ଲେଖିଲେ, ମୁଁ କାହାକୁ କେମିତି ପଚାରି ତାଙ୍କ ମନ୍ତବ୍ୟ ଗ୍ରହଣ କରେଁ । ମୋର ଧାରଣା ଯେ, ଶିଖିବାକୁ, ଜାଣିବାକୁ ଢେର ବାକିଅଛି । 'ଭାତ' ଏଇପରି କଟାଛଟା ହୋଇ ଲେଖା ହୋଇଛି । ତେଣୁ ରୋଟି ସହିତ ଭାତର କେତେଦୂର ସମ୍ପର୍କ ସେ କଥା କହିବା ନିଷ୍ପ୍ରୟୋଜନ ।

ବ୍ରିଟିଶ ଅମଳରେ 'ଭାତ' ପରଶା ଯାଇଥିଲା । ସେତେବେଳେ କେହି ସମଧର୍ମୀ ଏହା ରାଜଦ୍ରୋହମୂଳକ ବୋଲି ତଦାନୀନ୍ତନ ସର୍କାରଙ୍କୁ ଜଣାଇଥିଲେ । କେତେକ ସର୍କାରୀ ହାକିମ ରିହର୍ସେଲ ଦେଖିବାକୁ ଆସିଲେ । କେବଳ ଗୋଟିଏ ଗୀତ ସେଥିରୁ ଛଡ଼ାଇ ରିହର୍ସେଲ ଦେଇ । No objectin—ମନ୍ତବ୍ୟ ଦେଇଗଲେ

ସେମାନେ । ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ପୁଣି ରଙ୍ଗ ବଦଳାଇ ଏବେ ବି ସ୍ୱଚ୍ଛନ୍ଦରେ ଅଛନ୍ତି । କେବେ ସେ ଏ ଲେଖା ପଢ଼ିଲେ, ତାଙ୍କର ସେଦିନ କଥା ଅବଶ୍ୟ ମନେ ପଡ଼ିଯିବ । ତାଙ୍କୁ ଧନ୍ୟବାଦ ଦେଉଛି ମୁଁ ।

ସେତେବେଳେ ସେ ପୁଣି ଆସି ଆପଣା ଜନ ପରି ବଧାଇ ଦେଇଥିଲେ । ମୁଁ ମଧ୍ୟ କିଛି ନଜାଣିବା ଭଳି ରହି ପ୍ରତି-ଧନ୍ୟବାଦ ଦେଲି ତାଙ୍କୁ । ମୋର ହିତକାମୀ ବନ୍ଧୁମାନେ ମଧ୍ୟ ମୁରୁକି ହସା ମାଇଲେ । ଯେଉଁ ଗୀତଟି ସର୍ବାଗ୍ରେ ଲୋକଙ୍କ ଆଗେ ଗୁଆଇ ନଥିଲି ସେଦିନ, ସେଇଟି ଦେଉଛି—

"ମରଣର ଚିତା ମନ୍ଥନ କରି
ଅକାଳ ମଡ଼ା ଏ ଉଠ ରେ ଚେଇଁ"

[୪ର୍ଥ ଅଙ୍କ — ୨ୟ ଦୃଶ୍ୟର ଗୀତ ।]

ଗୀତର ଭଲମନ୍ଦ ବିଚାରର ଦିନ ସରିଚି । ପୁଣି ମଧ୍ୟ ଦିନ କେବେ ଆସିବ ।

ନାଟକର ସମାଲୋଚନା ଯେ କରିବେ, ତାଙ୍କର ମଞ୍ଚ, ନାଟକ, ଅଭିନୟ, ପାତ୍ର, କାଳ, ସ୍ଥାନ, ଭାଷା, ସଙ୍ଗୀତ ଓ ପରିବେଶ ଇତ୍ୟାଦି ଇତ୍ୟାଦି ବହୁତ କଥା ସମ୍ବନ୍ଧ ପରିଚୟ ଥିବା ଆବଶ୍ୟକ ।

ଭ୍ରମ ପ୍ରମାଦ ନଥିବ ବା ନାହିଁ —ଏ କଥା କହିବା ଧୃଷ୍ଟତା । ବାଳ ବିଚ୍ଛୁ ମନ୍ତ୍ର ନଜାଣି ସାପ ଗାତରେ ହାତ ଦେବାର ମୁଆଁଶ ଦେଖିଲେ ଟିକିଏ କମିତି ବାଧେ—ଦୁଃଖ ଲାଗେ—ଦୟା ଲାଗେ—ହସ ବି ଲାଗେ । ନୁହେଁ କି ?

—ଲେଖକ—

# ଚରିତ୍ର—

**ପୁରୁଷ:—**

ଗୌରବନ୍ଧୁ ରାୟ —ଜମିଦାର
ଜୟନ୍ତୀ —ଜମିଦାର ପୁତ୍ର
ଅନନ୍ତ —ଜୟନ୍ତୀର ବନ୍ଧୁ, ଦେଶକର୍ମୀ
ଦାମା —ଜମିଦାରଙ୍କ ପିଆଦା
ବାଲିଆ — „ ଗୁକର
ଚଇତନ ଓ ରତନ —ଗ୍ରାମବାସୀ ଦୁହେଁ
ବିପିନ —ଜମିଦାରଙ୍କ ଗୁମାସ୍ତା
ରଘୁଦାସ —ଗୃହୀ
ଡାକ୍ତର, କୃଷକ ନେତା, ପ୍ରଜା, ଚପ୍ରାସୀ, ମଫସଲ ଗୁମାସ୍ତା, ସ୍ୱାମୀଜୀ, ଭିକାରୀ, କଙ୍ଗାଳଦଳ ଓ ଗଉଡ଼ ଇତ୍ୟାଦି ।

**ସ୍ତ୍ରୀ:—**

ବିଜୟା —ଜମିଦାର କନ୍ୟା
ରମା —ରଘୁଦାସର ଝିଅ
ସାବୀ —ରମାର ସଙ୍ଗିନୀ
କନକ, ସର ଇତ୍ୟାଦି ଗ୍ରାମ୍ୟବାଳିକା ଓ ଗଉଡ଼୍ୁଣୀ ।



# ଉପକ୍ରମ—

(ବସ୍ତୀର୍ଣ୍ଣ ଧାନକିଆରୀ, ଦୂରରେ କୃଷୀମାନେ ଗାଉଥିଲେ)

ଭାତ !

ଭାତ !

ଭାତ !

ଭାତଲାଗି କାନ୍ଦନା ରେ ! ଆଉଁ ଗୋଡ଼ ହାତ !

(ତୋର) ଆଉଁ ଗୋଡ଼ହାତ । ୦ ।

ଦୁଃଖୀ ଆମେ କିଆରୀରେ ଖାଟୁ ଦିନରାତି
ଲହୁହାରେ ଚଷିଲୁ ମାଆ ଗୁଡ଼ିକ ତ ନିତି
ପର ପୋଷି, ଆପେ ମର—କି ବୁଦ୍ଧି କହତ ? । । ୧ ।

ଏଇ ମାଟି, ଆମ ମାଆ ରତନ-ଗରଭା
ତେଲ ପେଡ଼ି ନୁଖୁରା ତ ନିତି ତମ ଗଭା
ମାଆକୁ ନ ଚିହ୍ନି ତୁମେ ମାରୁଛ ତ ନାତ । ୨ ।

ମାର, ହାଣ, ଚାଡ଼, ଖୋଳ—ସହେ ମାଆ ସବୁ
ତମଲାଗି କାଳ କାଳ ସହୁଥିବ ବାବୁ !
ତା' ବିନା କେ ଭାତ ଦେବ ତୋ ମୁହେଁ କହତ ? । ୩ ।

ମାଆ କୋଳେ ଗଢ଼ୁ ଆମେ ପାଚିଲା କିଆରୀ
ପବନ ଖେଳାଇ ଦିଏ ସୁନାର ଲହରୀ
ଫଟା ବୁକୁ ଫୁଲେ ଦେଖି, ତୋ ହାତେ ଦାଆ ତ । ୪ ।

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ଭାଦ୍ରବ ମାସ । ସାଣିଖରା । ସହରତଳ ହରିପୁର ଗାଆଁ ମାଳର ଧାନ କିଆରୀ । କିଆରୀ ମଝିରେ ଗୋଡ଼ ବାଟଟିଏ ଖୁବ୍ ଦୂରକୁ ପଡ଼ିଛି । ତାହାର କରରେ ଗୋଟିଏ ଝଙ୍କା ଗଛ । ଦୂରରୁ ଶୁଭୁଛି ହଳିଆ ଗୀତ, ଧାନକଟାଳିଙ୍କର । ଏତିକବେଳେ ସାଇକେଲ୍ ଚଢ଼ି ଗାଆଁ ଜମିଦାରଙ୍କ ପୁଅ ଜପ୍ପୀବାବୁ ସେ ବାଟରେ ଯାଉଥିଲେ । ଦେଖିଲେ ଆଗ-ଚକରେ ପବନ ନାହିଁ । ସାଇକେଲ୍‌ରୁ ଓହ୍ଲାଇ ପମ୍ପ ଦେବାକୁ ଲାଗିଲେ । ରଘୁଦାସର ଝିଅ ରମା ବାପା ପାଇଁ ଭାତ ଧରି ହଳ-ଆଡ଼କୁ ଗ୍ଭଲିଛି । ଜପ୍ପୀଙ୍କ ଦୃଷ୍ଟି ପଡ଼ିଲା ତା ଉପରେ—ରମା ଓଢ଼ଣା ଟାଣି ମଫସଲର ଲଜ୍ଜାଶୀଳା ବାଳିକାପରି ବାଟ ଆଡ଼େଇ ଗ୍ଭଲିଗଲା, ତାର ବାପର ସନ୍ଧାନରେ – ଜପ୍ପୀ ତାହାର ଯିବାବାଟକୁ କିଛି ସମୟ ଗ୍ଭହିଁ ସାଇକେଲ୍ ଚଢ଼ି ଗ୍ଭଲିଗଲେ )

ରମା—(ଗଛମୂଳକୁ ଆସି) ଭାତ ! ଭାତ ଆଣିଛି ବାପା, ବାପା—

(ରମା ବାପ ରଘୁଦାସ ଦୂରରୁ ଝିଅର ଡାକ ଶୁଣି ଧୀରେ ଧୀରେ ପାଖକୁ ଆସିଲା । ଖଇଟାକୁ ଗ୍ଭହିଁ ଦେଇ ଝାଳ ପୋଛି, ଝାମ୍ପିଟା ମୁଣ୍ଡରୁ କାଢ଼ିଦେଲା )

ରମା—କିଅ ବାପା ! ବେଳ ଆସି ତିନିପହର ହେବ । ଭାତ ଗଣ୍ଡାକ ଖାଇ ଦେଇ—

ରଘୁ—(ଚାଟକା ହୋଇ) ଭାତ !

ରମା—ହଁ ବାପା ! ଆମ ଘରେ ତ ଚାଉଳ ନଥିଲା, କମଳୀ ନାନୀ ଘରୁ ଉଧାର କରି ଢକୁଆ ଚାଉଳ ଆଣିଥିଲି ଯେ—

ରଘୁ—କମଳୀ ଘର ଫେର୍ ଆମକୁ ଉଧାର ଦେଲା ? ହଉ, ଆଣ, ରଖ—(ରମା ଥୋଇଲା—ରଘୁ ଖାଇ ବସିଲା—ଜମିଦାରଙ୍କ ଗୁମାସ୍ତା, ପିଆଦା ଓ ନାଗରାବାଲା ଝୁଣ୍ଟା ସହିତ ପ୍ରବେଶ କରି ନାଗରା ଦେଲେ, ରଘୁ ଭାତ ଗୁଣ୍ଡାଟି ପକେଇଦେଇ ଉଠି ଠିଆ ହେଲା )

ଗୁମାସ୍ତା—ରଘୁଦାସ ! ଖଜଣା ?

ରଘୁ—ଦେଇ ତ ପାରିନାହିଁ ଆଜ୍ଞା, କାଲ ମହରଗରେ ପେଟକୁ ବୋଇଲେ ପିଠିକି ଅଣ୍ଟୁ ନାହିଁ ।

ଗୁମାସ୍ତା—ସେ କୈଫିୟତ୍ ଜମିଦାରଙ୍କୁ ଦବୁ, କାଏ ତୋର ଚାକର ହେଇନାହିଁ ଯେ, ହଳଚ ଥର ତୋ ଦୁଆରକୁ ଦଉଡ଼ୁଥିବ ।

ରଘୁ—ପାରିଲା କଥାଗ, ଧାନ କେଇଟା ତକେଇଲେ ଖଜଣା ନେଇ ଗୋଡ଼ତଳେ ହାଜର କରିଦେବି ।

ଗୁମାସ୍ତା—ବାବୁ, ଗୋଡ଼ତଳେ ହାଜର କରିବା ଦର୍କାର ନାହିଁ । ଆମେ ତୋ ଗୋଡ଼ତଳକୁ ଆସିଚୁଁ, ଦେଲୁ ।

ରଘୁ—ଏଇନେ ଆଉ କାହିଁ ବାବୁ ? କାଲଠୁଁ ଘରେ ଚୁଲି ଲଗିନଥିଲା ଯେ—

ଗୁମାସ୍ତା—ଆରେ, ସେ କଥା କହି ମୁଣ୍ଡ ଗଡ଼େଇଲେ ଚଳିବ ନାହିଁ । ସମସ୍ତେ ତ ସେମିତି କହିଲେ, ଆଉ ଜମିଦାର କଅଣ ଖେଇକା ମରିବେ ? ଖଜଣା ଏଇନେ ଦବୁ କି ନାହିଁ, ପଦେ କଥା ।

ରଘୁ — ଟିକିଏ ନ ତକେଇଲେ —

ଗୁମାସ୍ତା—ବେ ରେ ଦାମିଆଁ ! ଝୁଣ୍ଟା ପୋଛ, ନାଗରା ବଜା । ରଘୁକୁ ଏ ଷେତ ଜବତ୍ । ତୁ ଚାଲ୍ ରଘୁ କଚେରୀକି । ଯାହା କହିବାର ଜମିଦାରଙ୍କ ପାଖେ କହିବୁ । ଚାଲ, ଦାମା ! ଯାକୁ ସାଙ୍ଗରେ ନେଇ ଆ । (ଚାଲିଗଲେ)

ରମା — ବାପା ! ଭାତଗଣ୍ଡାକ ଖାଇଦେଇ —

ଦାମା — ଚାଲ, ଚାଲ, ଏ ବସି ଭାତ ଖାଇବ, ଆମେ ଅନୁସରଣ କରି ଠିଆ ହେଇଥିବୁ !

ରମା — (ହାତଟାଣି ବସାଇବାର ଉପକ୍ରମ କରି) କାଲିଠୁ କିଛି ଖାଇ ନାହାନ୍ତି ସେ ଦାମ ଭାଇ ! କେତେ ଘଡ଼ି ଲାଗିବ ? ତମେ ଚାଲ, ସେ ଯାଉଚନ୍ତି ଜମିଦାରଙ୍କୁ ସବୁ କଥା କହି ଦିନ ଟିକି ମାଗିବାକୁ —

ଦାମା — ରଖ୍, ରଖ୍, ଭାତ ଖାଇବାଟା ଯାର ଆଗ ହେଇଗଲା ! ଆମେ ସବୁ କେଉଁ ଆଖିକି ଦିଶିଲୁ ନାହିଁ ! ( ରଘୁର ହାତ ଧରି ଟାଣି ) ଚାଲ୍, ବସି ଭାତ ଖାଇବ, ସେଠୁ ଟିକେ ଫୁରସତ୍ ନବ ! ଆଉ ବାମାପାଇଁ ଗୋଟେ ଗନ୍ଧ ପାରିଦଉନୁଁ ? ଶୋଇ ଉଠି ହଲଟହଲରେ କଚେରୀକି ଯିବ ! ହାକିମ ଆମରି ଆଇଲେ ! ଚାଲ୍ (ଟାଣିନେଲା)

ରମା — ହ'କୋଣ ବାଟ କଚେରୀ, ଦାମଭାଇ ! ଦିଗୁଣ୍ଡା ଭାତ ଖାଲି—

ଦାମା — ହଁ, ହଁ, ଏତେବେଳକୁ ଦାମଭାଇ—ଆଉ —

ରମା—( ଥରେ ଭାତ କଂସାକୁ ଓ ଥରେ ବାପାକୁ ଚାହିଁଲା । ଆଖିରୁ ଲୁହ ପୋଛିଲା )

---

# ଦ୍ୱିତୀୟ ଦୃଶ୍ୟ

—ପଥ—

(ଗୋଟିଏ ପାଖରେ ଅଇଁଠା ଖଲିପତର ପଡ଼ିଛି । ମେହେନ୍ତର ଆସି ଝାଡ଼ୁ ମାରି ଗଦାକଲା । ସେ ଝାଡ଼ୁ ମାରୁଥିବା ବେଳେ, ଗୋଟି-କେତେ ନିରନ୍ନ କଙ୍କାଳସାର ଭିକାରୀ — ପିଲା-ବଡ଼, ବାଳକ-ବାଳିକା ଉଦ୍‌ଗ୍ରୀବ ନୟନରେ ଗୁହିଁଥିଲେ ସେ ଖଲିରେ ଲାଗିଥିବା ଗୋଟି-କେତେ ଭାତକୁ । ମେହେନ୍ତର ଝାଡ଼ୁ ମାରିସାରି ଗଲାପରେ ସେମାନେ ବଉଡ଼ିଆସି ଖଲିକୁ ଅନାଇଁ, ସେଥିରେ ଲାଗିଥିବା ଭାତ ଛଡ଼ାଛଡ଼ି କରି ଖୁଣ୍ଟି ଖାଇଲେ । ଏତିକିବେଳେ ଆସିଲେ ଜୟନ୍ତୀ ଆଉ ତାର ବନ୍ଧୁ ଅନନ୍ତ । ଦୁହିଁଙ୍କ ହାତରେ ଦୁଇଖଣ୍ଡି ସାଇକେଲ, ବେଲ୍ ଦେଲେ ବି ଭିକାରୀମାନେ ବାଟରୁ ଘୁଞ୍ଚୁ ନାହାନ୍ତି । ଦୁହେଁ ଠିଆହେଲେ । ଦୁଇଟି ପିଲା ଖଣ୍ଡିଏ ପତରୁ ଗୋଟିଏ ଦିଓଟି ଭାତ ଝୁଙ୍କିବାପାଇଁ କଳିକରି ମାଡ଼ଗୋଳ ହେଲାବେଳେ ତାଙ୍କୁ ଛଡ଼ାଇ ଦେବାକୁ ଯାଇ ଅନନ୍ତ ତାଙ୍କ ସାଇକେଲଟା ବଢ଼େଇଦେଲେ ଜୟନ୍ତୀ ହାତକୁ ) ।

ଅନନ୍ତ—ଧ'ର ତ ଭଲ ଟିକିଏ (ପିଲାମାନଙ୍କ ମାଡ଼ଗୋଳ ଛଡ଼ାଇ) ଛି, ଛି, ସେ୍ତ କଅଣ କରୁଛ ?

ଭିକାରୀ—ଭାତ ! (ଅନ୍ୟ କେତେଜଣ ଭିକାରୀ ଭିକାରୁଣୀ ସେ ବାଟେ ଗଲେ )

ଅନନ୍ତ— (ବ୍ୟଥିତକଣ୍ଠରେ)ହଇରେ ପିଲା ! କିଏ ଅଛି ତୋର ଆଉ ?

ପିଲା—କେହି ନାହିଁ ମୋର । ବାପ ବୋଉଣୀ ନଖାଇ ନପିଇ ମରିଗଲେ ।

ଅନନ୍ତ—ଜୟନ୍ତୀ ! ତୁ ସବୁ ଅ.ଜ ଅ.ମ ଗୃହଗାଆଁରୁ ଫେରୁଚୁ ?ମଝିରେ ମଝିରେ ଗାଁଆ-ଗହଳରେ ଗୋଡ଼ ଦେଲେ ଏମିତି କେତେ ଦୃଶ୍ୟ

ତୁ ଦେଖିବୁ ରେ ! କେତେ ଯେ ଏମିତି ଅନ୍ତଃସ୍ଥଳରେ ଝଡ଼ି-
ପଡ଼ୁଛନ୍ତି, ତାର ଖବର ରଖୁଚି କିଏ ? ଏ ତ ସାମାନ୍ୟ !

ଜମ୍ପୀ—ଉପାୟ ନାହିଁ କିଛି ଏମାନଙ୍କୁ ବଞ୍ଚେଇବାର ?

ଅନନ୍ତ—ଯାହାଙ୍କ ହାତରେ ଅଛି, ସେ ମନ କଲେ ତ !

ଜମ୍ପୀ—କଅଣ କରିବାକୁ ତୁ କହୁଚୁ ଯେ ?

ଅନନ୍ତ—ଧର ଗୋଟେ Rice mill (ଚାଉଳ-କଳ) କେତେଗୁଡ଼େ
ଲୋକ ଏଠି ଦାନା ପାଇଯାଆନ୍ତେ, କି ଗୋଟେ Paper
mill, (କାଗଜ କଳ) । ବାଉଁଶ ଆମ ଏଠୁ ଯାଇ ଲୋକେ
ବିଦେଶରେ କୋଟିପତି ହଉଚନ୍ତି, କାଗଜ ତିଆରି କରି ।
ଆଉ ଆମେ,—ଆମ ହାଣ୍ଡି ନିତି ଉପବାସ କରେ । ଚଟକଳ
ଗୋଟେ ହେଲେ ଲୋକେ ପୋଷି ହେଇ ଯାଆନ୍ତେ ନାହିଁ ?
କରୁଚି କିଏ ? କାନ ଥିଲେ ସୁନା ନାହିଁ, ସୁନା ଥିଲେ
କାନ ନାହିଁ । ଏଇ ତ ଆମ ଦେଶର ଅବସ୍ଥା !

ଜମ୍ପୀ—ମିଳିମିଶି ଯୌଥ କାରବାର, ଅର୍ଥାତ୍ Joint stock
business—ଆମ ଓଡ଼ିଶାରେ ଅସମ୍ଭବ । ଯେତେ ଯାଗାରେ
ଅନୁଷ୍ଠାନ ଗଢ଼ା ହୋଇଛି, ସବୁ ପ୍ରାୟ ଫେଲ୍ ।

ଅନନ୍ତ—ଆମେ ତ ମୁଠାଏ ଖାଉଚୁଁ ପିଉଚୁଁ, ମଉଜ ମଜଲିସ କରୁଚୁଁ,
ଥିଏଟର, ବାଇସ୍କୋପ, ଗାଡ଼ି, ମଟର ସବୁ ଆମର ଅଛି ।
ଗରିବଙ୍କ କେତେ ନରନ୍ନ ପରିବାର ଏମିତି—(ପିଲାଟିକି
ଠାରିଦେଇ) ଘରବୁ ଟିକିଏ, ଯଦି କିଛି କରିହୁଏ ।

ଜମ୍ପୀ—ଘରବ ତ ପରେ । ଆଗେ ଏମାନଙ୍କୁ ନେଇ ଚାଲ ଆମ
ଠାକୁର ଖଞ୍ଜାକୁ । ଦେଖିବା, ବାପାଙ୍କୁ କହି ଯଦି ଗୋଟେ
କିଛି କରିଯାଇପାରେ ।

ଅନନ୍ତ—ଦେଖ୍, ବାପାଙ୍କୁ ରାଜି କରେଇବା ଏକ ମୁସ୍କିଲ କାମ କିନ୍ତୁ ।
ଜୟୀ—ତା ତ ଜାଣେ, ସିଏ ତ ଜମିଦାର—ଏକାବେଳେ ଆଷାଢ଼ୀକ ।
ଅନନ୍ତ—(ହସି) ତୁ ବି ତ ଫେର ସେଇ ଘରର ?
ଜୟୀ—ଚାଲ, ଚାଲ, ଥଟ୍ଟା ରଖ । (ଭିକାରୀଙ୍କୁ) ତୁମେମାନେ ସବୁ ଚାଲ । ଖାଇବାକୁ ମିଳିବ ତୁମକୁ । କାମ କରିପାରିବ ତୁମେ ସବୁ ? (ଆଗେଇଲା) ।
ଭିକାରୀ—କି କାମ କରିବୁଁ ବାବୁ ! ବଳ କାଇଁ ?
ଅନନ୍ତ—ସବୁବେଳେ ତ ଖାଲି ହାଁ ହାଁ ହେଲେ ରେ । ଯୁଆଡ଼େ ଶୁଣ ଖାଲି ଧୋଇ, ମରୁଡ଼ି । ଦୁନିଆ ସାରା ମଣିଷ କଅଣ—କାଉ କୋଇଲି ବି କହୁଚନ୍ତି—ଭାତ, ଭାତ, ଭାତ, ( କହି କହି ଚାଲିଗଲା ) ।

## ତୃତୀୟ ଦୃଶ୍ୟ

(ଜମିଦାର ମହେଶ ବାବୁଙ୍କ ଘର । ଜମିଦାର କନ୍ୟା ବିଜୟା ଗାଉଥିଲା ଗୀତ—ଘରର ପଛପାଖ ଝରକାକୁ ଫିଟେଇ—ବାହାରର ଚନ୍ଦ୍ରାଲୋକିତ ଉଦ୍ୟାନକୁ ଚାହିଁ । ପଛରୁ ଆସିଲେ ଜୟୀ ବାବୁ । ଟେବୁଲ ଉପରୁ ସମାଜଟି ଆଣି ବସି ପଡ଼ିଲେ । ବିଜୟାର ତାଙ୍କଆଡ଼କୁ ମୋଟେ ଲକ୍ଷ୍ୟ ନାହିଁ । )

—ଗୀତ—

ଫୁଟିଲୁ ଯେବେ ଫୁଲ, ପାଖୁଡ଼ା ଶେଯ ସାକ୍ଷୀ
ମେଲିଲୁ ଯେବେ ଆଖି, ପରାଗ ଗଲା ଲାଖି ।
ଶଶୀ ଚାହେଁ, କଥା କହେ, କିଏ ଥରେ ଗଗନ କୋଣେ ଓଢ଼ଣା ତଳୁ,
ମନର କଥା, ମଉଳେ ମନେ, ଏକାକୀ ଲରମାଖି
ମନ୍ଦବହେ, ଗନ୍ଧ-ରେଣୁ, ସଞ୍ଜ ଫୁଲ;—ଚନ୍ଦ୍ର—ସଖୀ

ଜସ୍ମୀ—(କାଗଜ ପଢ଼ୁ ପଢ଼ୁ, ସେଠାର ଅନ୍ୟାନ୍ୟ କଥାକୁ ନଜର ଦେଇ ନାହାଁ )

ବଜସ୍ମା—( ଗୀତ ବନ୍ଦକରି ଫେରି ଗୁହାଁଲା—ଜସ୍ମୀ ବସି କାଗଜ ପଢ଼ୁଚନ୍ତି, ଧୀରେ ଧୀରେ ଆସି ପଛଆଡ଼ୁ ତାଙ୍କ ହାତରୁ ଖବରକାଗଜଟି ଟାଣିନେଲା । ଟାଣି ହସିଲା ଖୁବ୍ ଜୋରରେ )

ଜସ୍ମୀ—( ଧ୍ୟାନରେ ଥିଲେ, ଖାଲି ପଛକୁ ହାତଟା ବଢ଼େଇଦେଇ ) ଉହୁଁ—ଦେ—

ବଜସ୍ମା—(ଛଳେଇ) ଉ,ହୁଁ, ଦେ ! ନଅଟା ବାଜିବାକୁ କେତେ ଅଛି ଜାଣ ? ଅନନ୍ତ ବାବୁଙ୍କ ଘରଟି ଗପ ଜମିଥିଲା, ନାଁ ?

ଜସ୍ମୀ—ଉହୁଁ ଦେ—କାଗଜଟା ।

ବଜସ୍ମା—ନଅଟା ବାଜିବ ଯେ—

ଜସ୍ମୀ—ଓଃ, ବାଜୁନା, ଦେ ।

ବଜସ୍ମ—ନାଁ, ବାପାଙ୍କୁ ମୁଁ କହି ସାରିଛି । ଗାଡ଼ି ଠିକ୍ ଅଛି । ଉଠ ଯିବା । କାଗଜ ପଢ଼ା ସେତିକି ଥାଉ । ଫେରି ଅନନ୍ତ ବାବୁ ଆସିଲେ ଗପ ଜମେଇବ, କାଗଜ ପଢ଼ିବ । At least ବର୍ତ୍ତମାନ ପାଇଁ କାଗଜଟାକୁ ଟିକଏ ବିଶ୍ରାମ ଦିଆଯାଉ । (କାଗଜ ଭାଙ୍ଗି ଟେବୁଲର ଗୋଟେ ବାକ୍ସ ତଳେ ରଖିଦେଲା । )

ଜସ୍ମୀ—ଦେ, କାଗଜଟା ଅଧା ହୋଇଛି, ସାରେଁ ଟିକଏ ।

ବଜସ୍ମା—କଅଣ ପଢ଼ୁଥିଲ ଶୁଣେଁ । ଗୋଟେ କୋଉକାଳର ପୁରୁଣା କାଗଜ ।

ଜସ୍ମୀ—ପୁରୁଣା କାଗଜ ? ୨୭ ତାରିଖ ସେପ୍ଟେମ୍ବର ୧୯୪୩ । ନିଜେ ଦେଖିଛ, ପୁରୁଣା ହେଲା ?

ବନସ୍ଥା—ହେଲା ବା, କଅଣ ଅଛି ସେଥିରେ ? ଇମିତିକ Interesting ଖବରଟା ଅଛି, ଶୁଣେ ?

ଜସ୍ଥୀ—ଓଡ଼ିଶାରେ ଅନାହାରରେ ମୃତ୍ୟୁ । Food problem—ଭାତ, ଭାତ, ଭାତର Question ।

ବନସ୍ଥା—ସେକଥା ଯାହାର ଭାବବାର ସେ ଭାବୁ, ତମର କାହିଁକି ମୁଣ୍ଡ ବଥଉଛି ? ଏସବୁ ଅନନ୍ତ ବାବୁଙ୍କୁ ସାଜେ । B. A. ପାସ୍ କରିସାରି, କୋଉଠି ଆଜ ଭଦ୍ରଲୋକ ମହଲରେ ଜଣେ ହୋଇ ଗଣା ହେଉଥାନ୍ତେ, ନାଁ—ଗାଁଆଁକୁ ଆସି, ହଳ ଲଙ୍ଗଳ ! ତୁମେ ବି ତାଙ୍କ ସାଙ୍ଗେ ପଡ଼ି ଦେଖୁଚ—

ଜସ୍ଥୀ—ବଜ ! ଅନନ୍ତର ନିନ୍ଦା କରିବୁ ନାହିଁ ।

ବନସ୍ଥା—ବରାବର କରିବ, ଯେତେଦିନ ସେ ଏହି ଚଷାଭୂଷାଙ୍କ ସାଙ୍ଗ—ଏଇ ସଂକୀର୍ଣ୍ଣତା—

ଜସ୍ଥୀ—ସଂକୀର୍ଣ୍ଣତା !

ବନସ୍ଥା—ନୁହେଁ ? କି Nasty ସେମାନେ, କହ ନାଁ ? ସେ ଲୋକଗୁଡ଼ାଙ୍କ ଗନ୍ଧରେ ତ ମୋର ଯେମିତି Suffocation ହୁଏ ।

ଜସ୍ଥୀ—ଅନନ୍ତକୁ ତୁ ଚିହ୍ନି ନାହୁଁ, ଆଉ ସେ ଚଷାଭୂଷାଙ୍କୁ ବି—

ବନସ୍ଥା—ମୁଁ ଦେଖୁଚି ତମର ମତିଗତି ବଗିଡ଼ି ଗଲାଣି ଭାଇ ! ଉଠ, ଘରଟାରେ within thesefour walls ବସି ବସି, ମନେ ହେଉଚି ଯେମିତି ଗୋଟାଏ ବନ୍ଦୀ । ଚାଲ, Time ହେଲାଣି, ଯିବା ।

ଜସ୍ଥୀ—କୋଉଠିକି ?

ବନସ୍ଥା—ସିନେମା ।

ଜସ୍ଥୀ—ନାଁ ।

ବନସ୍ଥା—କାହିଁକି ?

ଜସ୍ମୀ   ଲାଭ ନାହିଁ କିଛି । ଆମ ଦେଶର, ଆମ ସମାଜର, ଆମ ପ୍ରାଣର କିଛି ମୁଁ ପାଏନାହିଁ ସେଥିରେ ବୋଲି, ଆଉ ରୂପ—କଥାର ମୋହ ବି ମୋର ନାହିଁ ।

ବିଜୟା—ନିଶ୍ଚୟ, ଥିଏଟରକୁ ଗଲି, ଲକ୍ଷ୍ମୀ ଥିଏଟର ନୂଆ ଆସିଛି । ଶୁଣିଲି ସାଜସଜ୍ଜା ଖୁବ୍ ଭଲ । ନାଚ ବହୁତ ।

ଜସ୍ମୀ—ବିଜ ! ସାଜ ପୋଷାକ କି ନାଚ ଦେଖିବାର ତୃଷ୍ଣା ବି ମୋର ନାହିଁ । ଆଉ ତା ଛଡ଼ା—

ବିଜୟା—ଥିଏଟରଟା ବି ଖରାପ ଲାଗିଲା ? Hopeless ! କି ପସନ୍ଦ ଯେ ତମର !

ଜସ୍ମୀ—ଷ୍ଟେଜ୍‌ଟାକୁ ମୁଁ ନାପସନ୍ଦ କରୁନାହିଁ ବିଜ ! ଷ୍ଟେଜ ହିଁ ଏ ଦେଶକୁ, ଜାତିକୁ, ଭାଷାକୁ ଜୀବନ ! କିନ୍ତୁ ଏଇ ସାଜ ପୋଷାକ, ଏଇ ନାଚ ହିଖଣ୍ଡ ନେଇ ନୁହେଁ, ଓଡ଼ିଆର ଜାତୀୟ ଜୀବନ ପାଇଁ ଆହାର ଦର୍କାର ।

ବିଜୟା—ତା ଅର୍ଥ ?

ଜସ୍ମୀ—ଅର୍ଥ ?—ଭାଷାରେ ମୌଳିକତା, ଭାବରେ ଉନ୍ମାଦନା, ତା ପରେ ଦେଶର ଚିନ୍ତ । ସମାଜର ଆବର୍ଜନା ଦୂର ହେବାର ବ୍ୟବସ୍ଥା, ଆଉ ନାଟକଟି ହେଇଥିବ ଆମର ନିଜ ସମ୍ପତ୍ତି—ରଙ୍ଗମଞ୍ଚରେ ଏଇ ସବୁ ଦର୍କାର । ଆଉ ଖାଲି ନାଚ ପୋଷାକ, ଏଗୁଡ଼ା ହେଲା ଲୋକଙ୍କୁ ଭୁଲାଇବା କଥା ।

ବିଜୟା—ବାଃ, ତମର ଯେ ପରିକଳ୍ପନା !

ଜସ୍ମୀ—ବେଶ୍, ତୁଇ କହନା, ଖାଲି ନାଚ ବା ବେଶରୁ ଆମେ ପାଇଲେ କଅଣ ? ଦୁଇଖଣ୍ଡ ନାଚ, ପୋଷାକର ଚକଚକ୍ୟ—ଏଇଟା ହେଲା ଭେଳକି ଲଗେଇ ଲୋକର ଆଖି ଭୁଲେଇବା ଜିନିଷ । ସମାଜକୁ, ଦେଶକୁ, ଭାଷାକୁ ମିଳିଲା କଅଣ ? ପର

ଦେଶର ଗୁଣ୍ଡାଏ idle- ହୁଏ ତ ଗୁଣ୍ଡାଏ ଆବର୍ଜନା ଆଣି
ଆମର ଘରେ ଭର୍ତ୍ତି କରିବା ଦର୍କାର ନାହିଁ କରୁଛ । ଆମ
ଦେଶକୁ ଗୃହ୍, ତା'ର ଅଭାବ କଅଣ, ଦେଖ—ସେ ଗୃହେ
କଅଣ, ବୁଝ—( ହଠାତ୍ ଘର ଦରଜାବାଟେ ଆସିଚ ରମା ।
ହାତରେ ଖଣ୍ଡିଏ କଂସା ଓ ଖଣ୍ଡିଏ ଥାଳୀ, କାନରେ ବନ୍ଧା
ହୋଇଚ ବପଟ ଡାଉ )

ବଜସ୍ଥା—( ଦେଖି, ଘୃଣା ଦୃଷ୍ଟିରେ ) କଏ ?

ରମା—ମୋ ନାଆଁ ରମା । ଆପଣଙ୍କ ଜମିଦାରୀର ଜଣେ—

ବଜୁ—ତା ବୋଲି ଏଠି କଅଣ ? କଟେଗ୍ଲକ ଯା, ଗୋଡ଼ରେ
ଗାଡ଼ଏ ପଙ୍କ କାଦୁଅ ନେଇ, ଘର ଭିତରକୁ ଆସି—
( ରମା ଚମକି ପଡ଼ିଲା )

ଜସ୍ଥୀ—ଛି, ବଜୁ !

ବଜସ୍ଥା—ଦେଖ ନା ଭଇ, କି ଅପରିଷ୍କାର ! ଗୋଡ଼ଟା ଧୋଇ
ଘରେ ପଶିଥିଲେ ତ—

ଜସ୍ଥୀ—( କଥାରେ ବାଧାଦେଇ ) କଅଣ କହୁଚ ତୁମେ ?

ରମା—ଗାଆଁ ଆମର ଏଠିକି ଦିକୋଶ ହବ, ହରିପୁର ।

ଜସ୍ଥୀ—ଓ, ଅନନ୍ତବାବୁଙ୍କ ବୃନ୍ଦାବନ ପାଖେ ?

ରମା—ହଁ ।

ବଜୁ—ବେଶ୍, ଏ ରାତି ଅଧରେ ଏଠି ଘର ଭିତରେ କଅଣ କାମ ?

ରମା—ଖଜଣା ଦେଇ ପାରି ନ ଥିଲୁଁ । ପାଚଲ୍ କଅଣ । ୪।୫ ଦିନ
ଛଡେଇ ଥିଲେ ଦେଇ ଥାଆନ୍ତୁ । କଅଣରେ ଝୁଣ୍ଟା ପେଣ୍ଡ
ବାପାକୁ ମୋର ଧରି ଆଣିଚନ୍ତି, କଟେଗ୍ଲକ । ଘରେ ଆମର
ତ କରୁ ନାହିଁ । ଉଧାର କରି ଗୁଡ଼ାଳ ଦିକୁଣ୍ଡା ଆଣି ଭାତ
ରାନ୍ଧିଥିଲି ଯେ ମୁଁ ବଳକୁ ନେଇ ଯାଇଥିଲି । ବାପା ମୋର

ଖାଇ ବସିବାକୁ ଯାଉଥିଲା, ଗୁଣ୍ଡାଏ ଧଇଚ—ଦାମା ପିଆଦା ଉଠେଇ ଆଣିଲା । ( କାନ୍ଦ ପକାଇଲା କହୁ କହୁ )

ବଜଯୁ।—ଖଜଣା ନ ଦେଇ ଏତେ ଦନ ରହିଲା କାହିଁକ ?

ଜଯ୍ୱୀ—( ବାଧାଦେଇ ) ହଁ, ତା ପରେ କଅଣ ହେଲା ?

ରମା—ହ' ଦନ ହେଲା ବାପା କଛୁ ଖାଇ ନାହିଁ । ଆଗୁଳ ରଖିଚନ୍ତ ତାକୁ । ଆମେ ସବୁ ଉପାସ । ଘରେ ଏଇ କଂସା ଖଣ୍ଡିକ, ଥାଳୀ ପଟକ ଥିଲା, ଆଜ ବୋଜ ହାଚର ଏଇ ତାଡ଼ ଦପଟ ।

ଜଯ୍ୱୀ—ରଖ ରଖ ତାକୁ । ବଜୁ, ମୁଁ ଟିକଏ ଆସୁଛୁ । ଆସ ତ ମୋ ସଙ୍ଗରେ ତୁମେ ।

ବଜୁ—( ଠିଆହୋଇ ଜଯ୍ୱୀ ଓ ରମାକୁ ଚାହୁଁଥାଏ )

ଜଯ୍ୱୀ—ଧର ତମର ବାସନ, ଆସ ।

ବଜୁ—ମୁଁ ଗାଡ଼ ଠିକ୍ ରଖିଚ, ତୁମେ ବେଗେ ଆସ ଭାଇ ।

ରମା—( ବାସନ ଇତ୍ୟାଦ ଧର ଚାଲଗଲା ଜଯ୍ୱୀ ପଛେ ପଛେ )

ବଜଯୁ।—( ନାକରେ ରୁମାଲ୍ ଦେଇ ) ଉଁଃ, କ Nasty !

———

## ଚତୁର୍ଥ ଦୃଶ୍ୟ

( ମାତ୍ରୁ ଅନ୍ଧାର ହେଇଛୁ, ଜମିଦାରଙ୍କ ସଦର ମେଲା ଆଗର ରାସ୍ତାରେ ଜଣେ ଭିଖାରୀ ଗାଇ ଗାଇ ଯାଉଛୁ )

—ଗୀତ—

ରବ ବୁଝିଲା ଆସି କାହୁଁ ତଳକ
ହସ କାନ୍ଦକୁ ଦେଇ ଗୋଳକ । • ।
ଜାଳବାକୁ ନାହିଁ କାହା ଘରେ ସଞ୍ଜ ସଳତା
ଖାଇବାକୁ ମିଳୁ ନାହିଁ ଖୁଦ ପେଜ ପଳତା

ଉଆଁସ କାହା ଘରେ ଆଖିରୁ ଲୁହ ଝରେ
ଛୁଆ ମୁହଁରୁ କାଟି ମାଆ ତା ପେଟପାଳେ
ହସି କେ ଚାଲୁଛୁ ବଆଲକ ॥
ପାଟ ପୀତାମ୍ବର କଏ ପିନ୍ଧୁଛୁ ଅସୁମାର
ଗଇଁଠା କବଟା ଖଣ୍ଡି ପେଡ଼ି ଲୁଗା କାହାର
ମୁଣ୍ଡ ଝାଳ ଭୁଣ୍ଡରେ ମାର କେ ଧନ ସାରେ
ଗଡ଼େ ଜଣେ କେ ବସି କଏ ସେ ଘର କରେ
ଦୁନଆଁରେ ଲଟିଚ ଭେଲକ ॥

( ରମାକୁ ସାଙ୍ଗରେ ନେଇ ଆସିଚ ଜମ୍ପୀ )

ଜମ୍ପୀ — ଟିକଏ ଏଇଠି ଥାଏ । ମୁଁ ସାଙ୍ଗେ ସାଙ୍ଗେ ଆସୁଚ ।
( ରମା ସେଠି ଠିଆହୋଇ ରହିଲା କାଠ ପିତୁଳିପରି । ଅଳ୍ପ କାଳ ପରେ ଆସିଚ ଦାମା ପିଆଦା—ରମାକୁ ଦେଖି ଖୁବ୍ ଆନନ୍ଦ ହୋଇଚ )

ଦାମା—ରମା ! ଆରେ ? ଘୁତ ଅନ୍ଧାରଟାରେ କେତେବେଳୁ ଆସି ଏଠି ଠିଆ ହେଇଚୁ—ଆଜ ଡାକୁନଇଁ ଟିକଏ ? ଛି, ଛି, ତୁ କଅଣ ମନେ କଲୁ, ସେଦନ ମତେ ଧଇପଦ ଗାଳ ଦେଲୁ ବୋଲ, ମୋ ମନ ଭାଙ୍ଗିଗଲା ?

ରମା — ( ବିରକ୍ତ ହୋଇ ) ଦାମା !

ଦାମା — [ ଚାରିଆଡ଼କୁ ଚାହିଁ ] ଏ ଅନ୍ଧାରରେ କଏ କୋଉଠି ଅଛି ଯେ, ତୁ ଫେର୍ ଏମିତି ସେଇଦନ ପରି—( ପାଖକୁ ଆସିଲା )

ରମା — ଦାମା ! ଗୁଣ୍ଡାମି କରୁଚ । ଭଲ ହବ ନାଇଁ, ଡାକିବି ଏଇନେ ?

ଦାମା— ମୁଁ ତୋ ଭଲକୁ କହୁଚି ରମା, ପାଞ୍ଚମାଣ ଜମି ମୋର ।
ତା’ ପରେ ଦେଖୁନୁ ତ ଜମିଦାର ଘର ଗୁଳକର । କଅଣ
ଖାଇବା, ନାଁ ପିଇବା, ନା ଡ୍ରାକମି—କୋଉଥିରେ ଊଣା ?
ବାପାକୁ ତୋର ଆଜ ଖାଇଲା କଂସାରୁ ଉଠେଇ କେମିତି
ପଗଡ଼ ଆଣିଲ ! ରମା ! ତୁ ଯେବେ ଟିକଏ କହିବୁ ତ
ଏଇନେ ତୋ ବାପାକୁ ମୁକୁଲେଇ ଆଣିଦେବ । କଅଣ କହୁଚୁ ?

ରମା—ମୋ ବାପାକୁ ମୁଁ ମୁକୁଲେଇ ନେବ । ତୋତେ କହୁନେଇଁ ।
ତୁ ଯିବୁ କି, ପାଟିକରି ଡାକିବ ଏଇନେ—

ଦାମା—ଆଚ୍ଛା, ଆଚ୍ଛା, ଦେଖୁଚି ରହ ତୋ ଢମାକ୍ । ବାପ ଅଟକିଚି
ବୋଲି ତ ! ଡ୍ରାଡଟେ କି ଗୋଡ଼ଟେ ଯେବେ ନ ଭାଙ୍ଗି ଗୁଡ଼ିଚି
ମୁଁ ତୋ ବାପର—ଫେର୍ ମୋ ନାଆଁ ଦାମା ଗଉଡ ନୁହେଁ ।
ଜାଣିଚୁ ତ ମୋତେ (ଗୁଲି ଯାଉଥିଲା)

ରମା —(କାନ୍ଦି ଉଠି) ଦାମା !

(ଆସି ପହଞ୍ଚିଗଲେ ଜମ୍ପୁ)

ଜମ୍ପୁ – ଦାମା ! କଅଣ ?

ଦାମା—(ସ୍ୱର ବଦଳାଇ)—ହାରାମ୍‌ଜାଦ ଟୋକି !

ଜମ୍ପୁ—(କଥାରେ ବାଧା ଦେଇ) ଏଇ ଦାମା !

ଦାମା—ହଜୁର ! ଏ ଗୋଟେ ଛତରଖାଇ ଟୋକି ଆସି, ଏଠି
ମୋତେ ଯାହା ନ ଆସେ ମୁହଁକୁ ଗାଳି ଦେଇ—

ଜମ୍ପୁ—ତୋତେ ଗାଳି ଦେଲା ?

ଦାମା—ତା ବାପଠି ଖଜଣା ବାକି । ଧରି ଆଣିଚି ବୋଲି ମୋର
ସାତପୁରୁଷ ଉଦ୍ଧାରୁଚି । ମାଇକିନିଆଁ ଟା ଗୁର ! ବୋପାଠି
ଏତେ ସୁଆଗ ଯେବେ ସରକାରୀ ଖଜଣା ଗଣିଦେଇ
ବୋପାକୁ ମୁକୁଲେଇ ନେ । ଆରେ ! ଚକ୍ଷି ନାଇଁ ମୋତେ

କଏ ବୋଲ ! ଦାମାଟି ମୁଁ । ଗରଭଣୀ ଗାଈ ବାଟ ଛାଡ଼ିବ
ମୋ ନାଆଁ ଶୁଣିଲେ । ଆଜ ତୁ ତ ଯାର—
ଜମ୍ପୁ—ଆଚ୍ଛା ତୁ ଯା, ମୁଁ ବୁଝିବି ।
ଦାମା—( ଡରଟି ଚାହିଁ ଚାହିଁ ସେଠୁ ଚାଲିଗଲା—ଅନ୍ତରାଳରେ ରହି
ସବୁ ଦେଖୁଥାଏ )
ଜମ୍ପୁ—ରମା ! ଶ୍ରେଷ୍ଠଲୋକ ସେଗୁଡ଼ା ( ଟଙ୍କା ପକେଟରୁ କାଢ଼ି )
କେତେ ଟଙ୍କା ଖଜଣା ବାକି ?
ରମା—(ମୁଣ୍ଡପୋତି) ମୁଁ ଜାଣେ ନାହିଁ ।
ଜମ୍ପୁ—ଏଇ କୋଡ଼ିଏ ଟଙ୍କା ନିଅ । ଗୁମାସ୍ତା ପାଖକୁ କଚେରୀକି ଯା ।
ଯାହା ଟଙ୍କା ହବ ଦେଇ, ବାପାକୁ ନେଇ ଘରକୁ ଯା ।
ବଳିଲେ ବାକି ଟଙ୍କା ଘରେ ଖରଚ କରିବ ।
ରମା—(ଟଙ୍କା ନ ନେଇ)ସାନବାବୁ ! ଟଙ୍କା ? ଏ ଟଙ୍କା, ଟଙ୍କା ମୁଁ
କଅଣ କରିବ ?
ଜମ୍ପୁ—(ହାତରେ ଟଙ୍କା ଦେଇ ) ଛି, ଛି, କାନ୍ଦନା, ନେଇ ଯା,
ଟଙ୍କା ନ ଦେଲେ ବାପାକୁ ଛାଡ଼ିବେ କେମିତି ?
ରମା—(କରୁଣ ଦୃଷ୍ଟିଦେଇ)ଏ ଟଙ୍କା ଫେର୍ କୋଉଠୁ ଶୁଝିବୁଁ ବାବୁ ?
ଜମ୍ପୁ—ତୁମେ ନିଅ ତ, ଏଇଟା ତ ଆଉ ମହାଜନୀ ଟଙ୍କା ନୁହେ !
ରମା—ସାନବାବୁ ! ଧାନ କଟା ହେଲେ ତେବେ—
ଜମ୍ପୁ—ଆଚ୍ଛା, ଆଚ୍ଛା, ତୁମେ ଯା ନାଁ ଆଗେ—ବାପାକୁ ନେଇ
ଘରକୁ (ଚାଲିଗଲେ) ।
ଦାମା—(ଅନ୍ତରାଳରୁ ବାହାରକୁ ଆସି) ଟଙ୍କା ମିଳିଗଲା ରମା, ନାଁ ?
ରମା—(ଚାଲିଗଲା ନଚାହିଁ ଦାମାକୁ) ହୁଁ ।
ଦାମା—ହୁଁ ? ଆଚ୍ଛା ! [ଚାହିଁ ଚାହିଁ ଅନ୍ୟ ଦିଗକୁ ଗଲା]

---

## ପଞ୍ଚମ ଦୃଶ୍ୟ

[ ଜମିଦାରଙ୍କ କକ୍ଷ । ଜମିଦାର ଭିତରୁ ଡାକ ଡାକ ଆସିଲେ ]

ଜମିଦାର – ବଜ୍ର !

ବଜ୍ରପ୍ରୁ – [ଆସି ପହଞ୍ଚି ] ଅଜ୍ଞା !

ଜମିଦାର – କି ଲୋ ! ତମେ ସବୁ ଚଳନାହଁ କି ?

ବଜ୍ରପ୍ରୁ – ଭାଇ ତ –

ଜମିଦାର – ଜମ୍ପୁ କଣ କୁଆଡ଼େ ବୁଲି ଯାଇଚି ? ଏତେବେଳଯାଏ ଆସି ନାହିଁ ?

ବଜ୍ରପ୍ରୁ – ନାଇଁ ସେ [ ଟିକିଏ ଅଟକି ] ଗୋଟାଏ [କଥା ଉହ୍ଲେଇଗଲା]

ଜମିଦାର – କଅଣ ଗୋଟାଏ ?

ବଜ୍ରପ୍ରୁ – (ମନର କଥା ଗୋପନ ରଖିବାକୁ ହସିଦେଇ) ନାଇଁ ବାପା ! ଗୋଟାଏ କୋଉଁଠିକି ଯିବାକୁ ହବ – ଠିକ୍ କରାଯାଇ ନାହିଁ ।

ଜମିଦାର – ଏ ସବୁ ତମର ପିଲାଳିଆ ବ୍ୟବସ୍ଥା । ଏଇତ ଆସି ନଅଟା ବାଜିଲା । Punctuality ଗୋଟାଏ କଥା – ତମେମାନେ ଆଜି ଶିଖିଲ ନାଇଁ କି ଜୀବନରେ ବି ହୁଏତ ଶିଖିପାରିବ ନାହିଁ ।

ବଜ୍ରପ୍ରୁ – କାହିଁକି ?

ଜମିଦାର – ସିନେମା ହେଉ ବା ଥିଏଟର ହେଉ ଏଠି Start ହୁଏ ଠିକ୍ ନଅଟାବେଳେ । ଯିବାକୁ କହୁଥିଲୁ, ଯଦି ଯିବାର ହୁଏ before time ପହଞ୍ଚିବା ଉଚିତ ।

ବଜ୍ରପ୍ରୁ – ମୁଁ କଅଣ କରିବ--ଭାଇ ଆସିଲେ ସିନା ?

ଜମିଦାର – ତମ ଯିବା କଥା ସେ ଜାଣେ ତ ?

ବଜ୍ରପ୍ରୁ – ହଁ, ମୁଁ ତାଙ୍କୁ କହିଚି ।

ଜମିଦାର —ତେବେ ଆଉ ଗଲ କୁଆଡ଼େ ? ଏତେ ପିଲାଟାଏ ହେଲଣି, କୌଣସି ବିଷୟରେ ଗୋଟାଏ ସମ୍ୟକ୍ଜ୍ଞାନ ହେଲା ନାହିଁ !

ବଜୟା—ନାଁ, ବାପା ସେ ବୋଧହୁଏ—ହଁ ହଁ, ଅନନ୍ତ ବାବୁଙ୍କ ଘରେ ଥିବେ । ସେଠି ଯଦି ବସିଗଲେ—

ଜମି —ଆରେ ବାବୁ ! ବସ, ମନା ନାହିଁ । ଅନନ୍ତ ଖରାପ ପିଲା ନୁହେଁ—ମୁଁ ଜାଣେ । ତା ବୋଲି—ଆଚ୍ଛା, ତୁ ପ୍ରସ୍ତୁତ ହେଇଯା—ତାକୁ ମୁଁ ଅନନ୍ତ ଘରୁ ଡକେଇ ପଠଉଚି । ( ଯାଉଁ ଯାଉଁ ) ହଁ, କୋଉଠିକି ଯିବ ମନେ କରଚ ?

ବଜୁ - ଭାଇଙ୍କର ଇଚ୍ଛା ନୁହେଁ ସିନେମା ଯିବା । ଆଉ ଥିଏଟର କଥା—

ଜମି —ବେଶ୍, ଥିଏଟରକୁ ଯା । କିଛି ସମୟ ମନ ବଦଳେଇ ଆସିଲେ ହେଲା ।

ବଜୁ - କିନ୍ତୁ ବାପା ! ଅଯଥା ଟଙ୍କା ଖର୍ଚ୍ଚକରି ଥିଏଟର ଦେଖି ଲାଭ କଅଣ ?

ଜମି —(ଫେରିଆସି ବଜୁର ମୁଣ୍ଡ ଆଉଁସି, ହସି ) ବାଃ, ତୋର ଫେର୍ ଏ ବୁଦ୍ଧି କେବେ ହେଲା ମାଆ ?

ବଜୁ—ନାହିଁ ବାପା ! ମୁଁ କଅଣ କହୁଥିଲି କି—ଥିଏଟରଟା ଖରାପ ଜିନିଷ ନୁହେଁ;—ଯଦି ସେଥିରେ ଆମ ଦେଶର Idea ଆଉ ଭାଷା, ଭାବ—ଆମ Domestic life ର ଗୋଟାଏ ସୁନ୍ଦର ଛବି ନଥାଇ ବିଦେଶୀ ଭାବ ଭଙ୍ଗୀ—ଏ ସବୁକୁ encourage (ଏନ୍‌କରେଜ) କରିବାଟା—

ଜମି—(ହସି) ମୋଟେ ଠିକ୍ ନୁହେଁ । କିନ୍ତୁ ତୋର ଏସବୁ ଜ୍ଞାନ—

ବଜୁ - ଏଇ ତ, ଠିକ୍ ସଞ୍ଜବେଳେ ଭାଇଙ୍କ ସାଙ୍ଗରେ ସେଇକଥା ।

ଜମି—ସଞ୍ଜବେଳେ ? କଅଣ ତା' ହେଲେ ଘରୁ ସଞ୍ଜପରେ—

ବଜ  (ଚମକି ଉଠି, ଜିଭ କାମୁଡ଼ି) ନାହିଁ ବାପା ! ଆଜି ନୁହେଁ—
କାଲି ସଞ୍ଜବେଳେ ଭାଇଙ୍କ ସଙ୍ଗେ—

ଜମି—ଓଃ, ତାହାହେଲେ ମୁଁ ଅନନ୍ତ ଘରକୁ ଲୋକ ପଠଉଚି ।
ସେ ସେଇଠେଇ ଥିବ । (ଚାଲିଗଲେ)

ବଜ—ଓହୋ, ଧରା ତ ପଡ଼ି ଯାଇଥିଲି ! ( ମୁଣ୍ଡରେ ହାତଦେଇ
ତଉକିରେ ବସି ହସିଲା )

ଜପ୍ପୀ—(ପ୍ରବେଶ କରି ) ବଜ !

ବଜ—(ହଠାତ୍ ତଉକିରୁ ଉଠି, ଜପ୍ପୀର ମୁହଁରେ ହାତଦେଇ, ଚୁପ୍
ହେବାକୁ ନିର୍ଦ୍ଦେଶ କରି, ହସି ଅନ୍ୟ ଘରକୁ ନେଇଗଲା)

ଜପ୍ପୀ—(କିଛି ବୁଝି ନ ପାରି ଯାଉଁ ଯାଉଁ ପଚାରିଲା) ମାନେ ?

ବଜ—(ବାପାଙ୍କ ଯିବାକୁ ଉଣ୍ଡି ) ଆସ କହୁଚି—
(ହସି ହସି ଭାଇଙ୍କୁ ଟାଣିନେଲା)

---

## ଷଷ୍ଠ ଦୃଶ୍ୟ

### ସୂର୍ଯ୍ୟାସ୍ତ

(ଗାଆଁ ମୁଣ୍ଡର ଧାନଖଳା, ରମା କୁଲାରେ ଧାନ ଉଡ଼ାଉଥିଲା ଆନନ୍ଦରେ ଗୀତଗାଇ । ପାଖରେ ଟୋକିଏ ବୋଝରେ ରଖାହେଇଛି ବୋଝେ ଧାନ । ଗୀତ ପଦେ ପଦେ ଧରୁଚି, ଧାନ ଉଡ଼ାଉଚି)

—ଗୀତ—

ମାଟି ପେଟ ଫାଟି ମାଆ ଦେଖା ଦେଲା
ମୁଣ୍ଡେ ଧାନ କେରି କେରି
ମାଆକୁ ଖୋଜୁଚୁ ବାଟୋଇ କାହିଁକି
ଅନା ଥରେ ଫେରି ଫେରି ରେ

ଦେଇ ବୁକୁ କବାଟ,
ମାଆ ରଖିଛୁ ତ ଖଣ୍ଡକୀଗ୍ରାରେ ।
ଅଣଦେଖା କଲେ ମାଆକୁ, ଭାଙ୍ଗିବ
ବାଟବଧା ଘର ଖଣ୍ଡି
ଆଗ ପଛ ସାହା କେହ୍ବ ନ ହୋଇବେ
ମଉବୁ ସିନା ଦଗ୍ଣ୍ଡି ରେ
ଦେବେ ଭଗାର ଭଣ୍ଡି,
ଫାଟିଯିବ ଛୋ ଦୂରନ୍ତା ହାଣ୍ଡି ରେ ।

( ଗୀତ ମଝିରେ ଆସିଛ ରମାର ବାପା ରଘୁଦାସ ଗୋଟିଏ ଖାଲି ବୋଝ ନେଇ )

ରଘୁ—ଦେ ଝିଅ ! ବୋଝଟା । ଧାନ ପୂରେଇଛୁ ?

ରମା—ହଁ, ସାନବାବୁଙ୍କ ଠଙ୍କାକୁ ଧାନ ଅଲଗା ଗଦେଇଚ ଟି ?

ରଘୁ—ହଁ ଲୋ ଝିଅ, ସେତ ଢଅଁଙ୍କ ଅମୁଣିଆଁ । ପେଟ ମରିବ ପଛେ, ସେ ଧନରେ ଫେର୍ ହାତ ଦବ କିଏ ? ଏ ବୋଝଟା ନେଇ ଯାଉଚ, ଆଉ ତ ଥରଟେ ହେବ । ତୁ ଉଠେଇକରି ବୋଝରେ ଠୋକ ଦେ ।

[ଖାଲି ବୋଝଟା ରଖିଦେଲା । ପୁରା ବୋଝଟାକୁ ବାପ ଝିଅ ଢହେଁ ଧରି ଉଠାଇଲେ । ରମା ବାପ ରଘୁ ମୁଣ୍ଡକୁ ନେଲା] ଝଟ ଝଟ ସାଉପକା । ବେଳ ଚଢ ରଢ ହେଇଆସିଲାଣି । [କହ୍ବ କହ୍ବ ଯାଉଥାଏ, ରମା ପୁଣି ପଦେ ଗୀତ ଧରି କାମରେ ଲଗିଲା ]

କୀମା—(ଧୀରେ ଧୀରେ ଆସି ଗଛମୂଳେ ଠିଆ ହୋଇ ଡାକଚ) ରମା !

ରମା—କିଏ ! [ଚମକି ପଛକୁ ଗୃହିଁଲା]

ଦାମ—(ହସି) ମୁଁ, ମୁଁ ଆସିଚ । ଯାହା କହୁଥିଲ —

ରମା — ଦାମା, ଫେର୍ ତୋର ସେଇ —

ଦାମା — ଆଗ୍ଯ, ତୁ ଟିକଏ ଭାବ, ମୋତେ ତୁ ନାପସନ୍ଦ କାହିଁକି କରୁଚୁ, ମୁଁ ତ ରୂପ, ଗୁଣ, ଧନ ସବୁଥିରେ—(କହୁ ପାଖକୁ ଆସିଲା)

ରମା — ପୋଡ଼ାମୁହାଁ ! ପାଖକୁ ଆସୁଚୁକ ଫେର୍—(ଉଠି ଘୁଞ୍ଚିଗଲା)

ଦାମା — ଆଲୋ, ମିଛରେ କାହିଁକି ତୁ ଭଲ — ( ପାଖକୁ ଆସି ) ରମା, ତୁ ମତେ ପାଗଳ କରି ଦେଲୁଣି ଲୋ ! ମୋର ଆଉ ତୋ ଛଡ଼ା —

ରମା — (ରାଗି, ଝାଡ଼ୁ ଉଠାଇ) ଯିବୁ ନାଁ ଫେର୍ ? —

ଦାମା — (ଫେରି ଯାଉଁ ଯାଉଁ) ବାକ ରମା ! ଭଲେଇ ହଉଚୁ କାହା ପାଇଁ ? ଆଖିରେ ସେଦିନ ଯାହା ଦେଖିଚି ଜାଣୁ ତ ? ହଉ, ହଉ, (ଚାଲି ଯାଉଁ ଯାଉଁ ) ବାହାପ ପାଇ ଯାଇଚୁ, ନାଇଁ ? ମୁଁ ଖାତିରିକି ଆସିଲି ନାହିଁ ? ଆଚ୍ଛା ! (ଚାଲିଗଲା ରାଗରେ)

(ଠିକ୍ ସେତିକିବେଳକୁ ପଞ୍ଚାଏ ପୁଅ ଝିଅ ଗୋଟାଏ ଛୁଆ ଖଡ଼ଖଡ଼ି କାନ୍ଧେଇ ଖେଳ ଢୋଲକଟିଏ ବଜେଇ ବଜେଇ ଆସୁଛନ୍ତି । ରମା ଚାହିଁଲା ତାଙ୍କୁ ସବୁ, — ଗୀତ, ହାତ ସବୁ ତାଇ ବନ୍ଦ)

କନକ — ରଖ ରେ ବେହେର ପୁଅ ! ଝିଅଟା ମୋର ଘରୁ ଯିବ ଶାଶୁଘର, ନାଆଁଘର ଘର ଛାଇବ ନାଇଁ ? ନାଆଁକ ଓଳଗି ହବ ନାଇଁ, ଏ କେମିତି କଥା ମ ? ରଖ ରଖ ।

ରମା—(ହସି)କଲୋ କନକ, ପୁଣି ଫେର୍ କୋଉ ଝିଅ ଲୋ ତୋର ?

କନକ—ସାନ ମଝିଆଁ ଲୋ ନାଆଁ ! ସରଙ୍ଗ, ସରଧା, ଆଜ ତା ବର ଆସିଚି ତାକୁ ନବାକୁ ଯେ, ଫେର୍ ତ ସାଇପଡ଼ିଶା

ଅଛନ୍ତ । ସବୁଆଡ଼ ଟିକେ ବୁଲେଇ ଦେଖେଇ ଦେଇଥାଏଁ ! ପୁଣି ଯାଇ କେବକୁ ଆସିବ ପିନା ? ତେଣେ କୁଣିଆଁ ଚର୍ଚ୍ଚା ହେବେ ଯେ ଡର କଅଣ ଅଛି ମୋର ? ରନ୍ଧାବଡ଼ା କଣ୍ଟି ବୋଇଲେ କଣ୍ଟି ହବାକୁ ନାହିଁ । ଦେ, ତୁ ଆଇଲୁ ଝିଅକୁ ଟିକଏ ସଙ୍ଖୋଳି ଯା । ଆଉ କଅଣ ଦବାର ମୁହଁ ଚୁହାଁ ଦେ ।

ଆ—ଆ—

ରମା—(ହସି ହସି) ଓ ହୋ ! କି ଘରକରଣାଟେ କରୁଛୁ ଲୋ !

କନକ—ମଲ, ଛୁଆ ପିଲା ଗୁଣକ ! ମୁଁ କଅଣ ଡମଡମାନଙ୍କ ପରି ଅଘରି ହେଇଛି କଲେ ? କଅଣ କଟେଇ ଲୋ ନାମି, ଏଇତେକେ କଅଣ ବୋଝ ସଇଲା ? କାଲିକି କାଲି ନଣ୍ଡାଟିର ବାହାଘର । ଆ, ତୁ ଆଇଲ, ଝିଅକୁ ଦେଖ୍ ।

ରମା—(ଆସି, ଖଡ଼ଖଡ଼ରୁ ଝିଅକୁ କାଢ଼ିଲା)ମଲା, ହଇ ତ—କେତେ ଗହଣାଗଣ୍ଠି ଝିଅକୁ ଦେଇଛୁ ଏ କାଳ ମହରଗରେ !

କନକ—ଆଲୋ ଝିଅ—ଢିଅ, ରହିଲେ ଗନ୍ଧାଏ । କାଳ ମହରଗ ବୋଲି ବୋଝ କଅଣ ରହିବ ? ଅଲ୍ପେ ବହୁତେ—ହାତ, କାନ, ମୁଣ୍ଡ, ସବୁଥିକି ସବୁ ସଜ ଦେଇଛି । ଦେ, ତୁ କଅଣ ଦବୁ—ଦେଲୁ ? ମୁଡ଼ି ଉଖୁଡ଼ା ହାଣ୍ଡିଟେ ନ ଦେଲେ ତ ହବ ନାଇଁ, ଛିଟେ କି ପାଟେ ଖଣ୍ଡିଏ ତ ହବ । କୋଉ କଥା ନ ହେଲେ ଚଳୁଛି ?

ରମା—ହଉ, ହଉ (ଧାନ ଆଣି)ଆମର ତ ଗରିବ ଘର ଲୋ କନକ, ଏଇ ଧାନତକ ନେ, ଝିଅ ସାଙ୍ଗେ ସଙ୍ଖୋଳାରେ ଦବୁ ।

କନକ—ହଉ, (ଧାନତକ କାନରେ ବାନ୍ଧିଲା) ଉଠା ରେ ବେହେରା ପୁଅ ! ଖଡ଼ଖଡ଼ି ଉଠା ! ଯାଉଚି ଲୋ ନାମି ! ଡର କଅଣ

ଅଛୁ—ଘଡ଼ିଏ, ପଦ୍ମଶ୍ରେ ବସି ତୋ ପାଖେ ଦୁଃଖ ସୁଖ ହବାକୁ ? ଝିଅ ବୋଝ ପରା ! ଜାଣୁନୁ ?

ରମା—(ହସି) ହଁ, ଗୋଟେ ଘର କରଣା ମାଇପିଟେ ଭୁ ! ମୁଁ ଜାଣୁନାଇଁ ଆଉ କଅଣ ?

କନକ—ସେଇଆ ପରା ! ବର ପିଲଟି ଆସି ଗାଆଁ ମୁଣ୍ଡେ ହବଣି । (ପିଲମାନେ ଗୁଲଗଲେ, ରମା ଲଗିଲା ତା କାମରେ ସିମିତ ଗୀତ ଗାଇ ଗାଇ । ପିଲ ଗହଳ ଭିତରେ ଆସିଛୁ ସାଇକେଲରେ ଜମ୍ବୀ । ଚୂପ୍‌କରି ସାଇକେଲ ଗୁଡ଼ଝ ଗଛମୂଳେ ଛୁଡ଼ା ହେଇ—ଏ ସବୁ ଦେଖଥିଲ ହସି ହସି । ରମା ଯେତେବେଳେ କାମରେ ଲଗିଲ—ଜମ୍ବୀ ପଛରୁ ଡାକଲ ।)

ଜମ୍ବୀ—ରମା ! (ଡାକ ଗଛମୂଳେ ମୁହଁ ଲୁଚାଇ ଦେଲ)

ରମା—(ଚମକ) ପୋଡ଼ାମୁହାଁ ଫେର ଆସିଛୁ ? ( ଝାଡ଼ୁ ଉଠାଇ, ମାଇଲ ଶବ୍ଦ ଆଡ଼କୁ ଲକ୍ଷ୍ୟ କରି, ସେଇଟା ବାଜଲ ଜମ୍ବୀ ମୁଣ୍ଡରେ । ସାଇକେଲଟା ପଡ଼ଗଲ ହାତରୁ ଗୁଡ଼ )।

ଜମ୍ବୀ—ଉଃ (ମୁଣ୍ଡରେ ହାତ ଦେଲ) ।

ରମା—କିଏ ? (ଦୌଡ଼ି ଆସି ଦେଖେ ଜମ୍ବୀ—ଚମକ ଉଠିଲ—ଜମ୍ବୀ ମୁଣ୍ଡରୁ ରକ୍ତ ବୋହୁଛି—ରମା କାନଟା ବଢ଼ାଉଥିଲ ପୋଛିବାକୁ—ସାହସ ହେଲ ନାହିଁ ବୋଧହୁଏ, କଅଣ କରିବ ଠିକ୍ କରି ପାରିଲ ନାହିଁ, ଜମ୍ବୀ ରକ୍ତ ପୋଛି ହସି, ଗୁହିଁଲ ରମାକୁ ।) ଥାଉ, ସେ କିଛି ହେଇନ (ରମାର ହାତକୁ ଧରିଲ)

— ——

ଷଷ୍ଠଦୃଶ୍ୟ

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଜମିଦାରଙ୍କ କକ୍ଷ—ଜମିଦାର ଓ ଦାମା । ଜମିଦାର ଶ୍ୟାମା-ଚରଣ ଦାମାକୁ ସଜୋରରେ ଗୋଟାଏ ଚପେଟା ମାରି କହିଲେ)

ଜମି—ବଦମାସ୍—

ଦାମା—ହଁ, ଆଜ୍ଞା ମୁଁ—

ଜମି—ଫେର ? ଯା ବାହାର ଆଖି ଆଗରୁ ମୋର । ସାହସ ତ ତୋର କମ ନୁହେଁ ଏ କଥା କହିବାକୁ ! ଜାଣୁ, ତୁ କାହା ଆଗେ କଣ କହୁଛୁ ?

ଦାମା—ଆଜ୍ଞା, ମୁଁ ଯାହା ଆଖିରେ—

ଜମି—ଆଖିରେ, ଦେଖେଇ ପାରିବୁ ? ତା ନ ହେଲେ—

ଦାମା—ଆଉ କୋଉଦିନ ଫେର ସେ—

ଜମି—ଖବରଦାର୍, ଡେ଼ର କହିଛୁ ଦାମା ! ଯା ! ବାହାର ମୋ ଆଖି ଆଗରୁ ଆବେ । ଯା—[ଅଙ୍ଗୁଳିରେ ବାହାରକୁ ଯିବାକୁ ନିର୍ଦ୍ଦେଶ ଦେଲେ ଓ ଦାମା ସଭୟେ ଚାଲିଗଲା । ଜମିଦାର ଶ୍ୟାମ ଚରଣ କିଛି ବେଳ ତା ଯିବା ବାଟକୁ ଚାହିଁ ରହି ପଦଚାରଣ କଲେ ଘରଟାଯାକରେ ] ସାନବାବୁର ନଜର ପଡ଼ିଛି, ଗୋଟେ ଛୋଟ ଲୋକର ଘରେ ! ହୁଁ [ ପୁଣି ବୁଲିଲେ ] [ଦୂରରେ ଶୁଭୁଛି ଗୀତ—ଜମିଦାର କାନେଇଲେ ] ଏମାନେ ଫେର୍ କିଏ ? [ପଛ ଝରକା ଫିଟାଇ ଦେଖିଲେ । ପିଲା ବଡ଼

ମିଶି ଦଳେ ଲୋକ ପଥରେ ଯାଉଛନ୍ତି ଗାଇ ଗାଇ ମୁଷ୍ଟି ଭିକ୍ଷା
ମାଗି—ଦଳକୁ ଦ୍ବଳନା କରୁଛନ୍ତି ଅନନ୍ତ ]

—ଗୀତ—

ମୁଠେ ଭାତ, ଦିଅ ଭାତ
ଭିକାରି ନ କହ ଆମକୁ, ଅଧନେ ପତାଇଲୁ ବୋଲି ହାତ, ॥୦॥

ଜମି—ଯେ ଫେର୍ କିଏ ? ଓଃ, କଙ୍ଗାଳ ଦଳ ! ଲିଡ୍ କରୁଛନ୍ତି
ଆମ ଅନନ୍ତବାବୁ ! ହୁଃ, ଯୋଗ୍ୟ ସନ୍ତାନ ! ( ଧଡ୍ କରି
କବାଟଟା ଆଉଜାଇ ଘରୁ ବାହାରିଗଲେ ଗୀତ ଶୁଭୁଥାଏ । )
(ସେଇ କୋଠରୀକୁ ଜମିଦାର କନ୍ୟା ବିଜୟା ଟିକିଏ ଘୁଞ୍ଚି ଆସି
ଦାମାକୁ ଡାକିଲେ ।

ବିଜୁ—ଏଣେ ଆ ! ମଲା ସେତିକିବେଳୁ ଗାଲଟା ଆଉଁଷି ଲାଗିଛୁ ନା ?
ଦାମା – (ଆସି) ସେ କଣ ଗଲାଣିକି ଦେଇ, ବ୍ରହ୍ମଶ୍ବପୁଡ଼ିଟି, ଦିନେ
କାଳେ ମତେ ହାକିମ ମ ବୋଲି କହି ନ ଥିଲେ –

ବିଜୁ—ଆଜ କାହିଁକି କହିଲେ ? ତୋ ଗୁଣରୁ –
ଦାମା—ଦେଇ ! ମୁଁ ସିନା ଭଲକୁ କହିଲି—ସେ ବୁଝିଲେ ଓଲଟା ।
ବିଜୁ—ତୁ ଭାରି ସିଧା କହିଲୁ ନାଁ—
ଦାମା – ମୁଁ ଦେଖିବ ପରି ଦେଇ ! ସାନବାବୁ ମେଞ୍ଚେ ନୋଟ୍ ସେ
ଟୋକାକୁ ଦେଲେ ।
ବିଜୁ – ତା ବୋଲି କଅଣ---
ଦାମା – ନାଁ, ସେ ଦବାରେ କଅଣ କିଛି କଥା ଥେଲା କି ? ତାଙ୍କ
ଦବା ଢଙ୍ଗ ଭିତରେ, ଦେଲାବେଳର ସେ ଆଖି, ମୁହଁ।ଣୀ---
ଏଇ ସବୁ ଦେଖିଲେ –

ବଜୁ—ଦେଖିଲେ – ମାନେ ? ସାନ ବାବୁ ଜମିଦାର ପୁଅ । ଖୁସି ହେଲା—ପ୍ରଜାଙ୍କୁ ପାଞ୍ଚ, ଦଶଟଙ୍କା ଦେଲେ – ତା ବୋଲି –

ଦାମା—ଉହୁଁ, ଦେଖ ! ସେମିତି ପାଞ୍ଚ ଦଶଟଙ୍କା ହେଉଥିଲେ କଅଣ ମୁଁ କଣ୍ଟୁ କହୁଥିଲି ନାଁ ? ସେ ପରା ମେଞ୍ଚାଏ – ହେଉଛି (ହାତ ଦେଖାଇ) ଏକଦମ୍ ଏତେ ।

ବଜୁ—ଏତେ ହେଉ, ସେତେ ହେଉ । ଦେଲେ ସେ ତାଙ୍କର ଖୁସି । ତୋର ଏ କଥା ବାପାଙ୍କ ଆଗେ କହିବା କଅଣ ଦରକାର ଥିଲା ? କଅଣ ନାଁ – ସାନ ବାବୁ ଗୋଟାଏ—

ଦାମା—ହଁ ଦେଖ ! ତାଙ୍କ ଆଖି, କାନ, ନାକ ଠିକ୍ କହୁଚ ସେ ଟୋକାଟା ତାଙ୍କୁ ନଷ୍ଟ କରିଦବ ।

ବଜୁ—ଓଃ, ତୋତେ କଷ୍ଟ ହୋଇଗଲା ପରା ?

ଦାମା—ହବନାଇଁ ନାଁ ? ଯେତେହେଲେ ତ ମୋର ସେ—

ବଜୁ—ହଁ, ମୁନିବ । ମୁନିବ ବିରୁଦ୍ଧରେ ଚାକର କଥା କହେ ତାର ଦାନା ଛୁଟିବାବେଳ ହେଲେ । ବୁଝିଲୁ ?

ଦାମା—(ଅପ୍ରସ୍ତୁତ ହୋଇ ଚାଲିଯିବାକୁ ଯେମିତି ବାଟ ଦିଶିଲା ନାହିଁ ତାକୁ – ଦୁଆରବନ୍ଧଟା ଉଛକରି ବାଜିଲା ମୁଣ୍ଡରେ, ଆଉଁଷି କହିଲା) ଓଃ !

ବଜୁ—(ଖୁବ୍ ହସିଲା)—Idiot ! (ଇଡିୟଟ୍) (କହି ମୁହଁ ଫେରାଇ ଦେଲେ । ଠିକ୍ ସେତିକିବେଳେ ପହଞ୍ଚିଲେ ଘରେ ଅନନ୍ତ ବାବୁ—ହାତରେ ତାଙ୍କର କେତେଗୁଡ଼ାଏ କାଗଜ ମୋଡ଼ା ହୋଇରହିଚି । ରମାର Idiot ଶବ୍ଦଟା ତାଙ୍କର ଆସିବା ବେଳକୁ ବାହାରିଲା—ଯେମିତି ରମା ତାଙ୍କୁଇ କହିଲା ।)

ଅନନ୍ତ—(ଟିକିଏ ଅପ୍ରତିଭ ହେଲା ବୋଧହୁଏ କଥାଟା ଶୁଣି, ଠିଆ ହୋଇଗଲା ଥକା ମାରି – କହିଲା ) Idiot !

ବଜ୍ରୁ—(ହସି) ହଁ, Idiot ! ତା ନ ହେଲେ—
ଅନନ୍ତ—କାହାକୁ କହୁଛ ତୁମେ ବଜ୍ରପୂ ?
ବଜ୍ରୁ—ଧର ଯଦି ବା ପୁଣି ମୁଁ କହେ (ଖୁବ୍ ହସିଲା—ତା ପରେ କହିଲା ଅନନ୍ତଙ୍କୁ ଚାହିଁ) Idiot !

ଅନନ୍ତ—(କ୍ଷୁବ୍ଧ ହେଲା କଥାଟା ଶୁଣି) ବଜ୍ରପୂ ! ଆଜ ଗୋଟେ ନୂଆକଥା ଶୁଣିଲି—
ବଜ୍ରୁ—ଠିକ୍ ତ କହୁଛନ୍ତି । ନୂଆ କଥାଟାଏ ଶୁଣିବାରୁ ତ ନୂଆ କଥାଟିଏ କହିଲି (ହସି) idiot !

ଅନନ୍ତ—ହଁ, କହିପାର ତୁମେ ଆଜି ବି କହୁ, ଖାଲି ଏଇତକ କାହିଁକି ?
ବଜ୍ରୁ—କହିବାର ଯଥେଷ୍ଟ ଅଧିକାର ବି ମୋର ଅଛି ।
ଅନନ୍ତ—କାରଣ ତୁମେ ଜମିଦାର କନ୍ୟା—ଧନପତିର—
ବଜ୍ରୁ—(ଅନନ୍ତ ବାବୁ ତାର ପରିହାସଟାକୁ ଭିନ୍ନ ଦୃଷ୍ଟିରେ ନେଇଛନ୍ତି ଦେଖି, ସେ ଦୁଃଖିତା ହେଲା ଏଥର ) ଅନନ୍ତ ବାବୁ ! ବାସ୍ତବିକ ତୁମେ—

ଅନନ୍ତ—[ଟିକିଏ ଚକାଇ] ହଁ, କହିଦିଅ । ଲଜ୍ଜା, ସଙ୍କୋଚ, ଭୟ କାହାକୁ ? ମୁହଁର କଥାଟା ଅଧା ରହିଗଲା ଯେ—କହ—
ଅନନ୍ତବାବୁ, ବାସ୍ତବିକ ତୁମେ (ହଠାତ୍ ଘର ଭିତରକୁ ଆସିଲେ ଜମିଦାର—ତେଣୁ କାହା ଉପରେ ବିରକ୍ତ ହୋଇ ଆସିଛନ୍ତି ।)

ଜମିଦାର—Nonsence !
ଅନନ୍ତ—(ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ)
ବଜ୍ରୁ—(ତାର ପିତାକୁ ଜାଣେ—ପୁଣି ହସି ହସି ପଛକୁ ଯାଇ ଗୋଟେ ଚଉକିରେ ବସି ସିଲେଇରେ ଲାଗିଲା ।)

ଜମି — (ଅନନ୍ତକୁ ଚାହିଁ) ତୁମେ ଏଠି ! ତେବେ ବାହାରେ ଏ ପାଲ ?

ଅନନ୍ତ — କଅଣ ?

ଜମି — ଗୋବନ୍ଦ ଛଡ଼ା ଦୋଳଯାତ୍ରା ? ସେ ତ ଅସମ୍ଭବ !

ଅନନ୍ତ — ମୁଁ ତ କାଲି କହୁ—

ଜମି — ଉଃ, ବୁଝି ପାରୁନା ? ଏଇ, ବାହାରେ ଏତେ ଲୋକ, କାହିଁକି ଏ ହଙ୍ଗାମା ? ଶୁଣିଲି, ତୁମେ ଗୋଟାଏ Leader ହୋଇଚ ! ବାପର ଅନ୍ନଧ୍ୱଂସ କରି, ବି· ଏ· ଟା ପାସ୍ କରି ସାରି, ଆଉ ବୋଧହୁଏ କହୁ ବେପାର ମିଳିଲା ନାହିଁ ? ଶେଷରେ ଏଇ ରାଜଦ୍ରୋହ —

ଅନନ୍ତ — ରାଜଦ୍ରୋହ ?

ଜମି — ନୁହେଁ ? ଗୁଡ଼ାଏ କର୍ମକୁଣ୍ଠ କଙ୍ଗାଳଙ୍କୁ ମତାଇ ଏ କି ଲୀଳା ଲଗେଇଚ ? ତମ ବାପା, ମାଆ ବଞ୍ଚିଥିଲେ, ତମର ଏ ଆଚରଣରେ ସେ ଖବ୍ ଖୁସି ହୋଇ ପାରନ୍ତେ—

ଅନନ୍ତ — ମୁଁ ତ ସେମିତି କହୁ —

ଜମି — ଆଉ, ସ୍ୱାଠୁଁ ଅଧିକା ଅନ୍ୟାୟ ତୁମେ କଅଣ କରନ୍ତ ?

ଅନନ୍ତ — କ୍ଷମା କରିବେ, ଆପଣ ବୋଧହୁଏ ଉତ୍ତ୍ୟକ୍ତ ହୋଇପଡ଼ିଛନ୍ତି କୌଣସି କାରଣରୁ । ନ ହେଲେ—

ଜମି — କଲେଜର ବଡ଼ ଡିଗ୍ରୀଟାଏ ହାସଲ କଲେ ଲୋକ, ଅନ୍ତତଃ ବୟସର ମର୍ଯ୍ୟାଦା ବୁଝେ ବୋଲି ମୋର ଧାରଣା ଥିଲା, ବୁଝିଲ ଅନନ୍ତ ?

ଅନନ୍ତ — ବୁଝି ପାରିଲି ନାହିଁ ମଉସା !

ଜମି — ବୁଝିବା ଦରକାର ନାହିଁ କହୁ । ତୁମେ ଏ ହଙ୍ଗାମା ଭାଙ୍ଗ ।

ଅନନ୍ତ — [illegible] ସେମାନେ. କରନ୍ତୁ ! ଆସିଛନ୍ତି ସେମାନେ ଦୁଃଖ ଜଣାଇବାକୁ, ଆପଣଙ୍କ ପାଖକୁ ।

ଜମି – କହୁଛ ତ, ସେ ଧୈର୍ଯ୍ୟ ମୋର ନାହିଁ ।

ଅନନ୍ତ — ତାଙ୍କର ଦୁଃଖ ଶୁଦ୍ଧାର ଆପଣ ନ ଶୁଣିଲେ ମରିଯିବେ ଯେ ସେଗୁଡ଼ାକ । କଏ ଦି'ଦିନ, କଏ ତିନି ଦିନ ହେଲା ଭାତ ମୁହଁ ଦେଖି ନାହାନ୍ତି ।

ଜମି — ବାଃ, ତା ପାଇଁ କଣ ମୁଁ ଦାୟୀ ? ତୁମେ କହୁଚ ଖାଇବାକୁ ପାଉ ନାହାନ୍ତି । ତଥାପି ସେନ୍‌ସସ୍ ରିପୋର୍ଟରେ ତ ଲୋକ-ସଂଖ୍ୟା କମୁନାହିଁ, ବରଂ ବଢ଼ୁଚି । ଲୋକ କମ୍ ହେବା ଦରକାର । ନଇଲେ ସମସ୍ତଙ୍କୁ ଦାନା ଯୋଗାଇ ହେବ କୋଉଠୁ ? ଗୁଡ଼ାଏ ମରନ୍ତୁ, ମରନ୍ତୁ ଗୁଡ଼ାଏ; ଏଉ କର୍ମକୁଣ୍ଠି ପଙ୍ଗପାଳ ଦଳ ପତଳା ହୋଇଗଲେ, ଅନ୍ତତଃ ମଣିଷ ଟିକଏ ଆଶ୍ୱସ୍ତିରେ ନିଶ୍ୱାସ ମାରିବ ଯାଅ । ତୁମେ ଯାଅ ।

ଅନନ୍ତ — ମଉଷା !

ଜମି—ବ୍ୟସ୍ତ ହେଇନାହିଁ ଅନନ୍ତ ! ତୁମେ ବର୍ତ୍ତମାନ ମୋ କଥା ବୁଝି ପାରିବ ନାହିଁ ।

ଅନନ୍ତ—ମଉଷା !ମୋ କଥା ଟିକଏ ଶୁଣନ୍ତୁ,ଗଉଣୀଏ ଦି' ଗଉଣୀ କରି ଧାନ ଏମାନଙ୍କୁ ଖମାରରୁ ପାଇବାକୁ ହୁକୁମ ଦିଅନ୍ତୁ । "ଡୋକେ ପିଇ, ଦଣ୍ଡେ ଜୀଇ" କରି ଏ କାଳଟା କାଟିନେଲେ ଫେର୍ ଏଇମାନେ ତ ଆପଣଙ୍କ ପ୍ରଜା ।

ଜମି—କିନ୍ତୁ, ମୁଁ ବା କରିବି କଅଣ ? ମୋର ଯେ ହାତ ଗୋଡ଼ ବନ୍ଧା—

ଅନନ୍ତ—ଆପଣ ଇଚ୍ଛା କଲେ –

ଜମି—ଇଚ୍ଛାକଲେ ସବୁ ଜିନିସ ସବୁବେଳେ ହୁଏ ନାହିଁ – ଖଜଣା ଆଦାୟ ହେବାକୁ ନାହିଁ; ମାହାଲଟାରେ ଖାଲି ବାକୀ, ବାକୀ । ଯୁଆଡ଼େ ଶୁଣିବ ଖାଲି ଦିଅ – ଦିଅ, ସେଦିନ ଆମର ଜଣେ

ନେତା ଘୋଷଣା କରୁଛନ୍ତି Surplus province ରେ ପୁଣି ଅଭାବ, ଅନାହାର ! ଦେଇ ଦେଇ ମଣିଷ ଅଧାପ୍ରାଣ ହେଲାଣି, ତେବେ ମଧ୍ୟ ରକ୍ଷା ନାହିଁ । ସେମାନେ ଯାଉ ନାହାନ୍ତି— ତାଙ୍କ ଦୁଃଖ ଥିଲେ, ସେଠି ଗୁହାରି କରିବେ !

ଅନନ୍ତ—କୋଉଠିକି ଯିବେ ? ମୁଠାଏ ଭାତ ଆଶାରେ ତ ସେମାନେ ଆସିଛନ୍ତି । ତାର ଗୋଟାଏ କିଛି ବ୍ୟବସ୍ଥା କରି ନ ଦେଲେ—

ଜମି—ମାନେ ?— (ଦାମା ପ୍ରବେଶ)

(ଦାମାପ୍ରତି) କଅଣ ?

ଦାମା—ବାବୁମାନେ ସବୁ ଗୋଟିଏ ଗୋଟିଏ ଆସି ଗଲେଣି । ହଜୁରଙ୍କୁ ଖୋଜୁଛନ୍ତି ।

ଜମି—ଆରେ, କେହି ନାହିଁ ତାଙ୍କୁ Receive କରିବାକୁ ! ସାନବାବୁ --

ଦାମା—ସେ, ତ—

ଜମି—ସେ ତ ?

ଦାମା—ନାଇଁ, ସେ ତ କେତେବେଳୁ ନାହାନ୍ତି ।

ଜମି—ତାଜ ! ଭାଇ କୁଆଡ଼େ ଯାଇଛି ?

ଖଜ—ସେ, ସେ,—ହଁ ହଁ, ସିନେମା ଯିବେ ବୋଲି କହୁଥିଲେ ।

ଜମି—ସିନେମା ? ଏତେଗୁଡ଼ାଏ ଭଦ୍ରଲୋକ ନିମନ୍ତ୍ରଣ ! ଟିକଏ ଭଲା responsibility (ରେସ୍‌ପନ୍‌ସିବିଲିଟି) ଥାଆନ୍ତା ! ତୁ ଯା ଦାମା, ଗୁମାସ୍ତାଙ୍କୁ କହ ଜାଗା କରନ୍ତୁ ।

ଦାମା—ଆଜ୍ଞା (ଚାଲିଗଲା)

ଜମି—ହଁ ହଁ ଶୁଣୁ, ପାନ, ସିଗାରେଟ—ଏଁ ?

ଦାମା—(ଫେରିଆସି) ଆଜ୍ଞା । (ଚାଲିଗଲା ।]

ଜମି — ଆଉ ତୁମେ କାହିଁକି ଠିଆହେଲ ଅନନ୍ତ ! ସେ କଙ୍ଗାଳ ଫଲଙ୍କୁ ବିଦାୟ କରିଦେଇ ଆସ । ଗୋଟାଏ ବେପାର ଲାଗିଚି । ଜମୀ ଆସୁ, ସାଙ୍ଗହୋଇ ଏଇଠି ଖାଇବ ।

ଅନନ୍ତ — ମଉଷା, କୋଟିଏ ପ୍ରଜାର ବାପ ଆପଣ, ସେ ଗରିବ ଗୁଡ଼ାକ ମୁଠାଏ ମୁଠାଏ ଭାତ ପାଇଁ ଗୁହିଁ ବସିଛନ୍ତି, ଅ ଉ—

ଜମି — ଓଃ, ବଡ଼ ଦରଦ ଦେଖୁଛୁ ! ଗରିବ, ଗରିବ ପରି ରହିବାକୁ ତାର ଜନ୍ମ । ସେ ସୃଷ୍ଟି ନେଇ ଦୁନିଆରେ କିଛୁ ଉନ୍ନତି ହୋଇ ପାରିବ ନାହିଁ । ଏସବୁ ଦୁର୍ବୁଦ୍ଧି ଛାଡ଼, ଏଇ କଙ୍ଗାଳ ଫଲ ତୁମକୁ ମଣିଷ କରି ଦେବେ ନାହିଁ ।

ଅନନ୍ତ — କିନ୍ତୁ ସେମାନଙ୍କର ଗୋଟିଏ କିଛି ବ୍ୟବସ୍ଥା ନହେଲେ—

ଜମି — କଅଣ, ଯିବେ ନାହିଁ ସେମାନେ ? ଏଇଆ କହୁଚ ? ଅଚ୍ଛା, ମୁଁ ତାର ଠିକ୍ ବ୍ୟବସ୍ଥା କରି ଦେଉଚି, ଦାମା, ଦାମା !

ଦାମା — (ଆସି) ହଜୁର !

ଜମି — ବାହାରେ ସେ କଙ୍ଗାଳ ଗୁଡ଼ାକ ସେମିତି ଅଛନ୍ତି ?

ଦାମା — ହଜୁର ଦାଣ୍ଡପାକ ହଲା କରୁଛନ୍ତି । ଘୁଞ୍ଚିବାକୁ ନାହାନ୍ତି, ଏକା ଜିଦ୍ଧ କରି—

ଜମି — ଆଉ ତୁମେ ସବୁ କଅଣ ମଲଣି ? କହି ଦେ, ଦେଖାହବ ନାହିଁ । ଯଦି ଭଲରେ ନ ଯାଆନ୍ତି, ବେତଦେଇ ନିକାଳିଦେ, ଯା । (ଓ୍ୱାକିଯିବାକୁ ବସିଲେ )

ଅନନ୍ତ — ମଉଷା ! ମୁରଦାର ଉପରେ କେ ଚଢ଼ା କାହିଁକି ? ପୁଅ ଝିଅ ସେମାନେ ଆପଣଙ୍କର । ଆପଣ ତ ଏକା ଜମୀ, ବଜ୍ରର ବାପ ନୁହନ୍ତି, ମଉଷା ! ( କହୁ କହୁ ଗୋଡ଼ଧରି ପକାଇଲା ।)

ଜମି — (ଗୋଡ଼ ଆଡ଼େଇ ଚାଲି ଯାଉଁ ଯାଉଁ) ହଁ, ତା ମୁଁ ଜାଣେ—

ବଜ୍ର — (ଅନନ୍ତ ବାବୁଙ୍କୁ ଉଠାଇ ) — ଅନନ୍ତ ବାବୁ !—

---

## ଦ୍ୱିତୀୟ ଦୃଶ୍ୟ

(ଜମିଦାରଙ୍କ ଫାଟକ ସାମନାରେ ନିରନ୍ନ ପ୍ରଜା ଗୁଡ଼ାଏ—କେତେକ ବାସ୍ତବ ଭିକାରି ଉପସ୍ଥିତ )

—ଗୀତ—

ମୁଠେ ଭାତ —ଦିଅ ଭାତ – ମୁଠେ ଭାତ
ଭିଖାରି ନ କହ ଆମକୁ, ଅଧନେ
ପତାଇଲୁ ବୋଲି ହାତ '୦॥
ଠାଙ୍ଗର ଭୂଇଁରେ ଆମ କରଣୀରେ
ଫୁଟାଇଲୁ ଧନେ ସୁନାର ଫୁଲ,
ମଡ଼କ, ମରୁଡ଼ି ଅଖିଆ ଖାଟଣୀ
ସେ ହାତର ଆଜ ନ ଦେଲା ମୂଲ;
କଙ୍କାଳ ତଳେ ଜଆଇ ରଖିଲେ
ଖାଟିବୁ ଜନମ ସାତ ।

(ଜମିଦାରଙ୍କ ଗୁମାସ୍ତା ଆସିଲେ)

ଗୁ—କାହିଁକି ଏଠି ହଲ୍ଲା ନଗେଇଚ ? ଦେଖିବ ଏଇନେ ? ଯା ସବୁ ଗୋଲମାଲ ଲାଗିଛି ଏଠୁ ।

ପ୍ର—ଗୁମାସ୍ତା ବାବୁ, କଏ ଧନେ, କଏ ଦ ଦିନ ହେଲା ଉପାସରେ ଆସିଛୁ । ଜମିଦାରଙ୍କ ଆଗେ ଆମ ଦୁଃଖ କହିବାକୁ, ଟିକଏ ଦେଖା କରେଇ ଦେଲେ ବଞ୍ଚିଯିବୁଁ ।

ଗୁ—ଦେଖା ଏଇନେ ହବ ନାହିଁ । ହାକିମଘର ଭୋଜ ହଉଛି । କେତେ ବଡ଼ ବଡ଼ ଲୋକ ଆସିଛନ୍ତି । ଏଇନେ ତର କାହିଁ

ତାଙ୍କୁ ? ବେଶୀ ଗୋଳମାଳ କର ନାହିଁ ଯା, ହାକିମ ଅମ ଉପରେ ରାଗୁଛନ୍ତି ।

ପ୍ର—ଆମେ ପୁଅ—ସେ ବାପ । ଆମେ ଦୋ ଦୋ ଉପାସ ମରୁଛୁ । ଦୁଃଖ କହିବୁ, ସେଥିରେ ଦେଖା ମିଳିବ ନାହିଁ ? ହଉ, ଯେତେ ବେଳଯାଏଁ ଦେଖା ନ ମିଳିବ—ଆମେ ଏଇଠି ବସିଲୁଁ ।

ଆଉଜଣେ—ହଁ ମ, ଘରେ ଉପାସ—ଏଠି ଉପାସ ! ଓଲଟି ଘରକୁ ଗଲେ ପିଲା ମାଙ୍କଡଙ୍କ ଶୁଖିଲା ମୁହଁ, କାନ୍ଦଣା,—ସେ ବକଳ ଶୁଣିଲେ ଛାତି ଫାଟିଯିବ । ଏଠି ହେଲେ ବସି ରହ । ବସ, ବସରେ ସଭିଏଁ ।

ଗୁ—ତୁମେମାନେ ଯିବନାହିଁ ତେବେ ? ମୁଁ ଭଲରେ କହିଲି ଶୁଣିଲ ନାହିଁ ?

ପ୍ରଜା—କହିଲୁଁ ପରା ଯାଇ ଯାହା, ନ ଯାଇ ତାହା । ଆମେ ଏଇଠି ବସିଛୁଁ, ଯାହା କରିବ କର ।

ଗୁ—ହଉ ତେବେ, ଦାମା—ଦାମା (ଦାମା ଆସିଲା)

ଦେ'ରେ ଦାମା—ଏଁ ମୋ କାମ ନୁହେଁ-ଏମାନେ ଜିଦ୍ ଧରି ବସିଛନ୍ତି, ଜମିଦାରଙ୍କୁ ଦେଖାକଲେ ଯାଇଁ ଯିବେ । ଯା, ଏଥର ତୁ ବୁଝିବୁ—ସେ ବୁଝନ୍ତୁ ।

ଦାମା—ହଉ ଆଜ୍ଞା ! କରେ କର୍ମକୁଡ଼ିଏ—ଯାଉଚ କି ନାହିଁ ? ତମ ଯୋଗୁଁ ଆମେ ଗାଳି ଖାଉଥିବୁ ? କାହିଁକରେ ? ଯିବ ନାଁ ଫେର ଏଇନେ—

ପ୍ର—ଦେଖା କରି ଦୁଃଖ କହି ଚାଲିଯିବୁ ଦାମା ଭାଇ, ଗୁମାସ୍ତା ବାବୁ ସିନା ହାକିମ—ତୁ କଅଣ ଗରିବଙ୍କ ଦୁଃଖ ବୁଝୁ ନାହୁଁ ?

ଦା — ତା ହେଲେ ତୁମେ ଯିବ ନାହିଁ, ନାଁ ?

ସମସ୍ତେ — ନାଁ —

ଦାମା — (ଠେଙ୍ଗାକରେ ପିଟି) ହଟେଁ। ହଟେଁ। — ବୋପା ଥାଉ ରଖିଚ ଛତରଖିଆଙ୍କର ଏଠି ? ଯା —

[ଲୋକେ କାନ୍ଦ ଉଠିଲେ ଜମିଦାର ଦୋତାଲା ଉପରୁ ଚାହିଁ ଏ ଦୃଶ୍ୟ ଦେଖୁଥିଲେ। ହଠାତ୍ ସେ ଦଳ ମଧ୍ୟକୁ ଅନନ୍ତ ଆସିଲା। ସେ ମଧ୍ୟ ମାଡ଼ ଖାଇଚ। ତାପରେ ଆସିଚ ଦୌଡ଼ କରି ବଜପୁ।]

ବଜ — ଦାମା — ଦାମା !

ଦାମା — [ପ୍ରହାର ଉଞ୍ଚାଉଥିଲା — ଅନ୍ଧପରି ମାରିବାକୁ]

ଜମି — (ଉପରୁ ଡାକଲେ) ଦାମା।

(ଦାମା ହାତରେ ଉଞ୍ଚ ଇଥିବା ବାଡ଼ ସେହିପରି ରହିଗଲା— ଜମିଦାରଙ୍କୁ ଫେରିଚାହିଁ)

---

## ତୃତୀୟ ଦୃଶ୍ୟ

### ଜମିଦାରଙ୍କ କକ୍ଷ

( ଅନନ୍ତ ଓ ଜପୁ। ଜପୁ ମୁଣ୍ଡରେ ଆଘାତର ଚିହ୍ନ)

ଅନନ୍ତ—[ଜପୁ ମୁଣ୍ଡରେ ଆଘାତ ସ୍ଥାନରେ ହାତ ରଖି ଚାହିଁ]

ଜପୁ — ସୁଯୋଗର ସୂଚନା ନ ଥିଲେ, ଦୁର୍ଯୋଗର ଛାୟା ପଡ଼େନାହିଁ ଅନନ୍ତ !—ଏଇଟା କଅଣ ?—

ଅନନ୍ତ — ନାଁ, ସେ ବିଶ୍ୱାସ ମୋର ଅଛି।

ଜପୁ — ସେଇ ବିଶ୍ୱାସଟାଇ ତ ମନୁଷ୍ୟର ଆଶ୍ୱାସ।

ଅନନ୍ତ—ବାବୁ ! ଏ ( Philosophy ) ଫିଲଜଫି—କବରୁ ?
ଜମ୍ବୁ—ବହରେ ଯାଉନାହିଁ, ନାଁ ? ଭୂତ ଅଣ୍ଡା ।

( ବଜୟା ଗ୍ଳ ନେଇ ଆସିବ )

ବଜୟା—ଭୂତ ଅଣ୍ଡା ? ବାଃ, ମୁଁ ନିଜେ ଏଇନେ ତିଆରିକରି ଆଣୁଚି, ଜନ୍ମରେ କେଉଁ ବା ଭୂତ ଅଣ୍ଡା ! ଆଛା ଦେଖି ( ଟେବୁଲରେ ଥୋଇ ଗୋଟେ କପ୍ ଅନନ୍ତଙ୍କ ମୁହଁ ପାଖେ ଧରିଲେ )

ଅନନ୍ତ—ଆହା ହା, ( ହାତରେ ଧରିକି ) ଗରମ ଗୁବ ଯେ ! (ହାତବାଜ ଉଠାଇଲେ ଟିକଏ ଗ୍ଳ) ଆଜ ତା ଛଡ଼ା—

ବ୍ରଜ—(ଅନନ୍ତ ପ୍ରତି) ଅନନ୍ତ ବାବୁ ! ବାସ୍ତବିକ୍ ଆପଣ ଗୋଟେ—

ଜମ୍ବୁ—ବ୍ରଜ !

ବ୍ରଜ—ଦେଖ ନା ଭାଇ ! ଏମିତି ଯେବେ ମୋତେ ଅପମାନ ଦେବାର ମନ ଥିଲା—

ଅନନ୍ତ—( ଆଶ୍ଚର୍ଯ୍ୟ ହୋଇ ) ଅପମାନ !

ବ୍ରଜ—ନୁହେଁ ? ଏଡ଼େ ଆଦରରେ, ମୁଁ ହାତରେ ତିଆରି କଲି, ନଖାଇ ପାରିଥାନ୍ତେ—କିନ୍ତୁ ଫିଙ୍ଗିଦେଲ—

ଜମ୍ବୁ—( ହସି ) ଓ, ଏଇ ହେଲା ତୋର ଅପମାନ ? ଭାରି ସେନସିଟିଭ୍ ତୁ !

ଅନନ୍ତ—ଇଚ୍ଛା କରି ତ ମୁଁ ଫିଙ୍ଗି ଦେଇନାହିଁ । ଆଉ, ଏଥିରେ ବା ଏମିତି ଅପମାନ—

ବ୍ରଜ—ସମ୍ମାନ ଯାହାର ଥାଏ, ଅପମାନ ତାକୁଇ ବାଧେ ।

ଅନନ୍ତ—ଜମ୍ବୁ, ଜାଣୁଛ ଭାଇ, ମୁଁ ଗ୍ଳ ଫା ଖାଏ ନାହିଁ, ବିଶେଷତଃ ଗ୍ଳ ଖାଇବାର କ୍ଷମତା ବା ମୋର କାହିଁ ? ଅକାରଣରେ ମୋତେ ଜବରଦସ୍ତି କରି ଏ ସବୁ ଗଣ୍ଡଗୋଳ—

ବ୍ରଜ—(ଜମ୍ବୁ ପ୍ରତି) ଓ, ତୁମେ ତାହେଲେ ଏ ସବୁର କର୍ତ୍ତା !

ଜପୀ—ବାଃ ରେ, ଶେଷରେ ମୋର ଦୋଷ ?

ଵଜ— ନଷ୍ଟପୁ, ତୁମେ ମୋ ପାଖକୁ ଖବର ପଠାଇ ନାଁ ? —"ଵଜ କ କନ୍ଧ, ସେ ଚା କଣଆଣୁ । ଅନନ୍ତ ଆଉ ମୁଁ"—ଅନନ୍ତ ବାବୁ ଖାଇବେ ବୋଲି ସିନା ମୁଁ ନଜେ—ବେଶ୍, ଏସବୁ ଢାଙ୍କିବାର ଯାଗା ଅଛି । (ଟେବୁଲ୍‌ରୁ ଚା ନେଇ ଚାଲିଗଲା ଘର ଭିତରକୁ ।)

ଜପୀ—(ଉଠି) ଆରେ ! ଅରେ ! ଗଲି ଚାଲିଯାଉଚୁ ଯେ, (ଧରିଆଣି —ଚା କପ୍‌ଟାକୁ ଟେବୁଲ ଉପରେ ରଖି) ଅନନ୍ତ ! ନେ ବାବୁ, କପେ ଖାଅ, ନାଁ, ଗୋହତ୍ୟା ପାତକ ହେଇଯିବ ନାହିଁ ତ । ଏ ବେଣ୍ଡ୍ରଗୋଲ ଭାଙ୍ଗୁ ( ଢାଳି କପେ ଦେଲା ) ।
(ଅନନ୍ତ କୁଣ୍ଠିତ ହୋଇ ଚା ନେଲା—ଵଜପୁ। ଚାହିଁଛି )

ଵଜ—ଓ ! ଭାଇଙ୍କ ହାତକୁ ଅପେକ୍ଷା ଥିଲା ? ବାପ, ସେଇଆ କହି ଥିଲେ ତ ହୋଇଥାନ୍ତା, ଆଚ୍ଛା ! ଆପାତତଃ ଧନ୍ୟବାଦ ।
(ଭିତରକୁ ଗଲା)

ଜପୀ—( ହସି ଚା ଧରି ବସିଲା ) ଖାଉନାହିଁ ରେ, ତା କଥା କିଏ ଶୁଣୁଚୁ ? ଖା ।

ଅନନ୍ତ—( କପ୍‌ଟା ମୁହଁ ପାଖକୁ ନେଇ ଓଠରେ ଲଗାଇ ଫେରାଇ ଆଣି ଲା ) ଓଃ, ବଡ଼ ଗରମ—

ଵଜ—(ଘର ଭିତରରୁ ମୁହଁ ଦେଖାଇ) ଜଗାକୁ ଡାକେଁ, ଗ୍ଲାସେ ପାଣି ଦେବ, ମିଶେଇ ଦେଲେ ଥଣ୍ଡା ହୋଇଯିବ, ଜଗା, ଜଗା !

ଜପୀ—( ହସି ) ଆରେ କି ଦୁଷ୍ଟ ତୁ ! ସିଲି ଗାର୍ଲ !

ଵଜ—( ମୁହଁ ହସି ) ହଉ, ଠିକ ଏ ଅନନ୍ତ ବାବୁଙ୍କୁ ବୁଝେଇ ଦିଅ, ଏଠା ସରବତ ନୁହେଁ—ଚା । ( ହସି ଚାଲିଗଲା )

ଜସ୍ମୀ—ଅନନ୍ତ, ବଜଟାଙ୍କୁ ପିଲାଦିନେ ଯାତ୍ରା ଦେଖିଥିଲୁ, ଆଜି ଠିକ୍ 'ସେଇପରି, କିଛି ମନରେ ଧରନା । ଆମ କଥା ପଡ଼ୁ । କଅଣ ତୁ କହୁଥିଲୁଟି ? ଏଥର କହ, ମନଦେଇ ଶୁଣିବି । କେମିତି ଏକ ବଦଭ୍ୟାସ ! ବେଳବୁଡ଼େ ଗରମ ପାଣି ଟୋପାକ ନ ପଡ଼ିବାଯାଏ, ମନଟା କୋଉଥିରେ ଲାଗେ ନାହିଁ । କହ, ତୁ କଅଣ କହୁଥିଲୁଟି ?

ଅନନ୍ତ—( ଚା କପ୍ ଧରି ଅନ୍ୟମନସ୍କ ଭାବରେ ଚାହିଁ ରହିଥାଏ । ଜସ୍ମୀର କଥା ଯେପରି ଶୁଣିନାହିଁ )

ଜସ୍ମୀ—( ଅନନ୍ତକୁ ତଦ୍‌ବସ୍ଥ ଚାହିଁ ) କରେ ! ( ଚା' ପିଇଲା )

ଅନନ୍ତ—( ଚମକି ) ଏଁ, ହଁ, କଅଣ ପଚାରିଲୁ ?

ଜସ୍ମୀ—ବେଶ୍ ! ଆରେ ଚା ଟା ପିଇଦେ, ଏମିତି ଅନ୍ୟମନସ୍କ ହୋଇ ଚାହିଁ ରହିଛୁ ଯେ ! ବୋଧହୁଏ ତତେ ଠିକଏ—ବଜଟାର ଏ ପର୍ଯ୍ୟନ୍ତ—

ଅନନ୍ତ—ନାଁ, ନାଁ, ସେ କିଛି ନୁହେଁ । ଏଁ, ତୁ କଅଣ ପଚାରୁଥିଲୁ ?

ଜସ୍ମୀ—ଚା ଟା ଖା—

ଅନନ୍ତ—ମୋର ତ ଚା ଖାଇବାର ଅଭ୍ୟାସ ନାହିଁ ।

ବଜ—(ଜଳଖିଆ ନେଇଆସି) ଏ ଅଭ୍ୟାସ ହୁଏ ତ ନଷ୍ଟପୂ ଅଛି । ( ହସିଲା )

ଅନନ୍ତ—( ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା )

ଜସ୍ମୀ—ବଜ, ଖେଳ ମାଡ଼ି ବ ବେଳେ ବେଳେ କାଟେ । ଯା, ଜଳଖିଆ ରଖିଦେଇ ଯା ।

ବଜ—କନ୍ତୁ ଭଇ, ପ୍ଲାଙ୍କୁ ବ ମୁଁ ନଜେ ହାତରେ ତିଆରି କରିଚି । ( କହୁ କହୁ ଚାଲିଗଲା ) ଅନନ୍ତ ବାବୁ ! ଏକ୍ସ୍‌କ୍ୟୁଜ୍ ମି ।

ଜମ୍ପୀ—( ହୋ ହୋ ହୋଇ ହସିଉଠିଲି ) ଦେଖୁଚୁ ଅନନ୍ତ ?
ସେ ଚଲି, କଅଣ କହୁଥିଲୁ ଟି ?

ଅନନ୍ତ—ସେଇ ନେତାଗୁଡ଼ାଙ୍କ କଥା ।

ଜମ୍ପୀ—ତୁ କଣ ଭାବୁଚୁ ?

ଅନନ୍ତ—କିଛି ଭାବ ପାରୁନାହିଁ ଭାଇ, ସେ ଟାଏ ବାଟ ମୋତେ ଦିଶୁନ,—ନେତାଏ ବୋଧହୁଏ ଚମ ବାଧ ପାରନ୍ତେ ।

ଜମ୍ପୀ—କିନ୍ତୁ—

ଅନନ୍ତ—ହଁ, ସେଇ 'କିନ୍ତୁ' ଟିକକ ତ ସେଥିରେ ଅଛି । ତାଙ୍କୁ ବାଗେଇ ପାରିଲେ, ଲୋକ ଗୁଡ଼ାକ ବଞ୍ଚିଯାଆନ୍ତେ ।

ଜମ୍ପୀ—କଣ କହୁନାହଁ ?

ଅନନ୍ତ—କିଛି ଠକାମି, ଆଉ କିଛି ଫନ୍ଦିଫିକର, ନହେଲେ ପ୍ରଜାଗୁଡ଼ାଙ୍କୁ ଡଗାବ ଭଳି ଦେଇ, ଥୋଡ଼ାଏ ଧନ ଟାଣିଟୁଣି ନେଲେ, ଏଇ ଆଉଥରେ ଫସଲଟା ଉଠିବାଯାଏ ଅନ୍ତତଃ—

ଜମ୍ପୀ—(ଭାବନାରେ ବସିଲେ)

ଅନନ୍ତ—ଆଉ ଗୋଟାଏ ଦୁଃସମ୍ବାଦ ଶୁଣିଚୁ ନା ? ଖାଇବାକୁ ନପାଇ ପେଟ ଗରମ ହୋଇ, ଠାଏ ଠାଏ ହାଇଜା ଦେଖାଗଲାଣି ।

ଜମ୍ପୀ—ଆରେ ଆରେ ! ବେଡ଼ୀ ଉପରେ କୋରଡ଼ା ! ପବ୍ଲିକ୍ ହେଲ୍‌ଥ ଡିପାର୍ଟମେଣ୍ଟକୁ ଗୋଟେ ଖବର ଦେବାକୁ ହେବ—ଖୁବ୍ ଶୀଘ୍ର ।

ଅନନ୍ତ—ସେଥିରେ ଯେ ବିଶେଷ କିଛି ଲାଭ ହେବ—

ଜମ୍ପୀ—କାହିଁକି ?

ଅନନ୍ତ—ପେଟକୁ ଭାତ ଦରକାର ବାବୁ, ଭାତ ନଥିଲେ ପେଟରେ ଇନୋକୁଲେସନ୍‌ର ଲାଭ ?

ଜପ୍ପୀ—ଠିକ୍, ତଥାପି ପାଞ୍ଚଅଖ ଯାଗାଗୁଡ଼ାକ ଟିକଏ ପରିଷ୍କାର ପରିଚ୍ଛନ୍ନ ରଖିବା, ପିଇବା ପାଣିଟା ଫିଟାଇ ଗୁଣି ପିଇବା, କୁଅ ଡିସିନ୍‌ଫେକ୍ଟ କରିବା—ଏମୁରି ତ ଫେରୁ ଅଛି ।

ଅନନ୍ତ—ହଁ, ସେଥିପାଇଁ ଅବଶ୍ୟ ଲୋକଙ୍କର କୋଅପରେସନ୍ ଚାହିଁ—

ଜପ୍ପୀ—ଏଇତକ ପାରୁନାହଁ ଟି ! ଆଉ ଦେଶସେବା ! ଅଚ୍ଛା, ମୁଁ ଆଜି ଯାଇ ତୋ ପାଇଁ ଫିଲ୍‌ଡ଼୍ ଠିକଣା କରିଦେଇ ଆସୁଚି । ଗାଁ ର ଘରେ ଘରେ—

ଅନନ୍ତ ବୁଝିଲି, ବୁଝିଲି, ତା ଆଗରୁ ତୁ ଥରେ ଗାଁ ପୋଖରୀଗୁଡ଼ାକ ଦେଖିଆ, ଗୋଟେ ଆଇଡ଼ିଆ ତୋର ହୋଇଯିବ ତ । ଏଇ ହରିପୁରଟା ତ ପାଟଣେ । ସେଇଠୁ ତୁ ଷ୍ଟାର୍ଟ୍ କଲୁ ଆଗେ ଦେଖିବା—

ଜପ୍ପୀ—ଆଚ୍ଛା, ସେଇଆ ହବ—

ଅନନ୍ତ—ହବ ଯେ, ପୁଞ୍ଜି ତ ଫେର ଚାହିଁ ।

ଜପ୍ପୀ—ଦେଖାଯିବ, ଏ ସାମାନ୍ୟ ଟଙ୍କା ମୁଁ ଯୋଗାଡ଼ କରିଦେବି ।

ଅନନ୍ତ—[illegible]ଙ୍କ ପାଖରୁ ଯଦି କହୁ –

ଜପ୍ପୀ—ସେଇଟା କହୁ ଭାଇ, ମୋ କାମ ନୁହେ-ବଜଜ୍ଞ ଧରିଲେ—

ବଜ—(ଭିତରୁ) ଥଣ୍ଡା ପାଣିର ବୋଟଲୁଏ ଦର୍କାର ଚଢ଼ିବଣି । ଟେଣ୍ଡୁ—ମେ ଆଇ କମ୍ ଇନ୍ ?

ଜପ୍ପୀ—ଆ, ଆ, ତୋ ପାଖେ ତ ଗୋଟିଏ ବଡ଼ କାମ ଅଛି ।

ବଜ (ଆସିଛି ହାତରେ ଗ୍ଲାସ ପାଣିନେଇ) କାମଟା କାହାର ଶୁଣେ ?

ଜପ୍ପୀ—ମୋର ଆଜ ଅନନ୍ତର ବ—

ବଳ—Oh, good heavens ! ଅନନ୍ତ ବାବୁଙ୍କର ? ବେଶ୍, ଛାଡ଼େଲେ ଶୁଣାଯାଉ ( ଗ୍ଲାସ ଥୋଇଦେଇ ଆଖିବୁଜି ଛୁଡ଼ାଦେଲା )

ଜପ୍ପି—( ଅନନ୍ତକୁ ଠାର, ହସି ) ଅନନ୍ତ !

ଅନନ୍ତ—ବସ ନା ବଳପ୍ପା—ବସିଲେ ସିନା ଶୁଣିବ ।

ବଳ—ଓଃ, ଆପଣଙ୍କର ଅନୁରୋଧ ! (ଦୀର୍ଘନିଃଶ୍ୱାସ ମାର) ଧନ୍ୟବାଦ୍ ।

ଅନନ୍ତ—କଥାଟା ଶୁଣ, ବସ ।

ବଳ—( ହସି ବସିଲା ) ଧନ୍ୟବାଦ !

— — —

## ଚତୁର୍ଥ ଦୃଶ୍ୟ

### ହରପୁର ଗାଁ ଦାଣ୍ଡ

( ଚୈତନଆ ଓ ରତନା କଥାବାର୍ତ୍ତା ହେଇ ଆସିଲେ )

ଚୈତନ—(ଭିତରୁ ରତନାକୁ କହି କହି ଆସିଲା) ଅରେ ପ୍ପାଡ଼ିକୁ ଟିକଏ ଆ !

ରତନା—(ଆସି)କଥାଟା ତ କହିବୁ, ଜଅଣ କଏ ମୁଣ୍ଡ କାଟି ନଉଚ ? ଆମ ଗାଁ ଭୂଇଁ କଥା—ଆମେ କଥାଭିକା ହଉଚୁଁ ।

ଚୈତ—ଭୂନହ, ଗୋଟେ ଉବଉବାଟାଏ ଭୁ, କଥାଟା କହୁ ଜଣିବାକୁ ନାଇଁ । ମିଛଟାରେ ଗୋଟାଏ ହନ୍ନ କରୁଚ, ଅଗ ଶୁଣ, ଆରେ—ରଘୁପଧାନ ମୁଣ୍ଡରେ ଏଇନେ ଗଜ କଳସ ଢାଳଚ । ଦେଖିନୁ, ସଞ୍ଜ ସକାଳେ ତା ଦୁଆରକୁ କେଇଥର ସ ଇକେଲ ଆସେ—ଘଣ୍ଟି ଟିଣି ଟିଣି କର ।

ରତନା—କିଏ ବାବୁ କାହା କଥା ବୁଝୁଚ, ଆପଣା ଦୁଃଖରେ ତ ହାଣ୍ଡି ଚାଉଳ ନାହିଁ। ଏ ଦିନ କାଲ ( ଅଣ୍ଟାରୁ ଚଉଡ଼ା ହୋଇ-ଥିବା ଖଣ୍ଡେ ଟଙ୍କାକିଆ ନୋଟ୍ କାଢ଼ି ) ହେଇଟି ଦେଖ, ଏଖଣ୍ଡେ ନେଇ, ତିନିଖଣ୍ଡ ଗାଁ ବୁଲି ଆଇଲି ଯେ, ଧାନ ମୁଣ୍ଡେ ଟେ ମିଳିବାକୁ ନାହିଁ। ବହୁତ ଖୋସାମତରେ କିଏ ବା ଯେବେ ଦୁଇ ସେରରେ ଦେବାକୁ ରାଜିହେଲା, ସେ କହୁଚି ସୁନା ଆଣ, ନହେଲେ ରୁପା ଆଣ, ଟେହ୍ନିଙ୍କ ଝିଅ ମାଇପ ନଙ୍ଗଳା। ନାକରେ କାନରେ ଯାହାଥିଲା, ସବୁ ତ ବିକି ଖାଇ ପେଟରେ ପଡ଼ିସାରିଚି।

ଚୈତ—ଆରେ ରେ, ଆମ ଗାଁରେ ଧାନ ?

ରତନା—ଗାଁରେ ଧାନ ! ଗାଁରେ ! ମୂଷା ଏକାଦଶୀ କରିବାକୁ ଯୋଉଠି ଅଗ ଭଙ୍ଗାଟାଏ ମିଳିବାକୁ ନାହିଁ—

ଚୈତ—ଆରେ, ଆଜି ସକାଳେ ଏବେ ରଘୁଦାସ ଘର ବିକିଲା ୨୦ ଟଙ୍କାର ଧାନ।

ରତନା—ରଘୁଦାସ ! ୨୦ ଟଙ୍କାର ଧାନ !

ଚୈତ—ହଁ, ହଁ, ରଘୁଦାସ, କୋଡ଼ିଏ ଟଙ୍କାର ଧାନ। ଏଇ ଆଖିରେ ଦେଖିଚି, ଏଇ ହାତରେ କିଣିଚି। ମିଛ ଯେବେ ମଣୁଚୁ, ଗାଆଁ ଯାକୁ ପଚାର। କହିଲି ପରା, ଚଳ କଳସ ଢାଳିଚି। ରଘୁଦାସ ଆଉ ସେ ରଘୁଦାସ ହେଇ ନାହିଁ ; ରଘୁଦାସ ଏଇନେ (ଚାରିଆଡ଼କୁ ଚାହିଁ ରତନା କାନରେ ଫୁସୁଫୁସୁ କରି କେତେଗୁଡ଼ାଏ କଥା କହିଲା ) ବୁଝିଲୁ, ନଡ଼ିଆର କୋଉ ଶିରରେ ପାଣି !

ରତନ—ହେଲା ଏବେ ମାରି କଅଣ ?

ଚୈତ—ମାରି କଅଣ ! ହଇରେ ଚାଲ—ଚଲ ! ରଘୁଦାସ ବାବନ ହେଇ ଚନ୍ଦକୁ ହାତ ପତାଉଚି।

ରତନା—କଏ ଏତେବ କାହାକୁ ହାତପତାଉଚି, କଏ ଜାଣିଲା ? ଗୁନ୍ଦ ବାବନକୁ ହାତ ବଢ଼ଉଚି, କି ବାବନ ଗୁନ୍ଦକୁ ହାତ ବଢ଼ଉଚି ! ଆମର ଭାଇ, ଏତେ କଥାରେ ଯାଏ କେତେ, ଆସେ କେତେ ? ମୋଟ ଉପରେ ଯଦିବା ଏକଥା ସତ, ରଘୁଦାସ ତ ଆଜ ଅଜାତିରେ ପଶିଯାଉ ନାହିଁ ?

ଚୈତ—ବାକ, ସାଆନ୍ତଙ୍କ କାନରେ ଏକଥା ପଡ଼ିଲେ, ରଘୁଛ ଯାକ ଆସନ ରହିବ ନାହିଁ । ଜାଣୁଚ, ତାଙ୍କୁ ଆମ ଗରିବ ଗୁଣ୍ଡାକ କେମିତ ଗନ୍ଧାନ୍ତି ?

ରତନା—ଆରେ, ବାସୁ କ ଗନ୍ଧାଉ । ପେଟ ପୋଡ଼ିଯାଉଚି, ଆଜ ଗନ୍ଧ ବାସନା ଖୋଜୁଛୁ ? ଏ ବେଲବୁଡ଼ିଟା ହେଲାଣି, ରଘୁ ଏତେବେଳେ ଧାନ ଦବନି ?

ଚୈତ—ଦବନାହିଁ କାହିଁକ ? ସମସ୍ତିଙ୍କି ଦଉଚି, ତତେ ଦବ ନାହିଁ କାହିଁକ ? ତୋର କଉଡ଼ିରେ କଅଣ ସନ ନାହିଁ ? ତୁ ଆସିଲୁ, ଆ—ଭୂତପାଇଁ ସଂସାର ଧରମଛଡ଼ା ହେଇଗଲାଣି । କଅଣ ଆଉ କହିବା, କାହାକୁ ?

ରତନା—କରିବା କଅଣ ଭାଇ ! (ବୁଲି ଯାଉଥିଲା) ଓହୋ, ପେଟଟା କେମିତ ଡାକ ଦେଲା ରେ ! ମୁଁ ବନ୍ଧବାଟ ହେଇ ଯାଉଚି ଭାଇ, ଆଗରେ ତୁ ବୁଲ । ମୁଁ ଅଣ୍ଟାପାଣିଟା କରିଦେଇ—

(ବେଗେ ବୁଲିଗଲା)

ଚୈତ—ହଉ, ହଉ, ଆ—ଧରିଲା କ କଅଣ ନ ଯାକୁ ହଇଜା !

(ବେଗେ ବୁଲିଗଲା )

( ରମା ଓ କେତେଜଣ ଗ୍ରାମ୍ୟବାଳିକା ଗାଇ ଗାଇ ବୁଲିଗଲେ )

— ଗୀତ —

ସଖି ଲୋ, କୁଞ୍ଜେ ମୁରଲୀ ବାଜଇ ॥୦॥

ପାଣିକି ଚଇ ଚଇ ପବଣ ଥରଇ ଥରଇ

କାଳିଆ କି ମୋହିନୀ କଲା—

ଆସି ସଞ୍ଜ ହେଲା—ସଖି ଲୋ । ୧ ।

ନଣନ୍ଦ ଭଗାରୁଣୀ କପଟ ଅପଦଣୀ,

ଗୋପ ବଜାରେ ହୁରି କଲା—

ରାଧା ଜଳ ମଲା ସଖି ଲୋ । ୨ ।

( ଗାଇ ଗାଇ ଚାଲିଗଲେ )

(କିଛି ବେଳ ପରେ ଆସିଲେ କଥାଭାଷା ହେଇ ଜମ୍ପି ଓ ଚଇତନିଆ ସହିତ କେତେଜଣ ଗାଁ ଲୋକ)

ଜମ୍ପି—କୂଅରୁ ଖାଅ ।

ଚ—କୂଅ କଅଣ ସମସ୍ତଙ୍କର ଅଛି ବାବୁ ? ପଖାନ ସାଇ ଗୋଟା-ଯାକର ଆଶରା ତ ଏଇ ପୋଖରୀର ପାଣି ଟୋପିକୁ ; ଖିଆ ପିଆ ଗାଧୁଆ ପାଧୁଆ—ସବୁ ଏଇଠୁ ।

ଜ—ଛି, ଛି, ଏମିତି ହେଲେ ତ ଚଳିବ ନାହିଁ । ଏସବୁ ବନ୍ଦ କରିବାକୁ ହେବ ।

ଚ—କମିତି ଆଉ ? ପାଣି ଟୋପାଏ ନ ପାଇଲେ ଲୋକେ ସିନା ମରିବେ ?

ଜ—ଏମିତି ତ ଜାଣୁ ଜାଣୁ ମରୁଛନ୍ତି—ଆତ୍ମହତ୍ୟା ! ଏଇ ବୋଲି ପୋଖରୀ ! ଗୋରୁ ମଇଁଷି ଗାଧୋଇବେ ଏଇଠି, ମଣିଷ ଗାଧୋଇବେ ଏଇଠି, ଗାଆଁର ଯାବତ ଅପରିଷ୍କାର ଲୁଗାପଟା ଧୁଆଧୋଇ ଏଇଠି, ପୁଣି ଏଇ ପାଣି ଲୋକେ ଖାଇବେ ।

ର— ଖାଜଣାମ ତ କେମିତି ଚାଲ ଚାଲନ ଆଜ୍ଞା, ଆଜ ଗତି କଅଣ ?

ଜ— ବନ୍ଦ କର, ବନ୍ଦ କର, ଗାଆଁରେ ହଇଜା, ସେଇ ରୋଗୀର କନାପଟା ଧୋଉଚ ଏଇଠି, ଏଥିରେ ରୋଗ ବଢ଼ିବ ନାଁ କମିବ ? ଏଥିରେ ତମର ଡାକ୍ତର କଅଣ କରିବେ ? ବଇଦ କଅଣ କରିବେ ? ଠାକୁରାଣୀ, ପାଣି ପଣା, ଦାଣ୍ଡି ଭାଗବତରେ ବା କଅଣ ହେବ ?

ର— ଅଉ କୋଉଠୁ ପାଣି ଟୋପେ—

ଜ— କଅ ଖୋଳାଏ ।

ଚ— (ହସି) ଧନ ହେଲେ ଟିନା—ସରକାର ଏ ସବୁଥିରେ ଟିକଏ ସାହାଯ୍ୟ ନ ଦେଲେ—

ଜ— କେତେନ ! ସରକାର, ସରକାର ! ସବୁଥିରେ କେତେ କଅଣ କରିବ ସରକାର ? ଦେଖୁନ ତ ଯୁଦ୍ଧ କଥା, ରାକ୍ଷସ ପରି ବଇରୀ ଚହିଁଛି ଗିଳିବ ଅମ ଦେଶକୁ, ଲୋଭ ତ ବଳବତ୍ତର ! ତାଙ୍କୁ ଜଗିବ ନାଁ ତମ କଥା ବୁଝିବ ? ସୈନ୍ୟସାମନ୍ତ-ଗ୍ରକଗୁଳା କେତେ ଖରଚ ! ଏତେବେଳେ ସର୍କାରକୁ ପିନା ଆମର ସାହାଯ୍ୟ ଦେବାର କଥା—ସବୁ ତା ମୁଣ୍ଡରେ ଚପେଇଲେ ଚଳିବ କେମିତି ? ସେସବୁ ନୁହେଁ । ସାଇର ଏମୁଣ୍ଡେ ସେମୁଣ୍ଡେ କୂଅ ଦୁଇଟା ଖୋଳାଅ, ମୁଁ ଟଙ୍କା ଦଉଚି ।

ସମସ୍ତେ— ସାନବାବୁଙ୍କର ଉନ୍ନତି ହଉ—ହରିବୋଲ, ହରିବୋଲ !

ଜ— ହଁ, ହଁ, ଶୁଣ, ବାକି ଏ ଢ଼' ତିନିଦିନ ତୁମେ ଜଗ । ଯେମିତି କନାପଟା ଏଠି ଧୁଆ ନ ହୁଏ । ଆଉ ପାଣିଟା ଫୁଟାଇ ନେଇ ଥଣ୍ଡାକରି ଖାଏ । ଗାଆଁ ଗୋଟାକଯାକ ମରିଯିବେ ଯେ ! ଏଇକ୍ଷଣି ଯାଇ ତୁମେ ଗାଆଁରେ ଲୋକଙ୍କୁ ସାବଧାନ କରିଦିଅ, ବୁଝିଲ ?

ଚ — ଆଜ୍ଞା ! ସାଇ ଏମ୍ଣ୍ଡ କଅଁଟା ଭାଗବତ ଘର ପାଖରେ—

ଜ—ଆଚ୍ଛା ! ତୁମେ ଯା, ମୁଁ ଶାସନ ସାଇଟା ଦେଖି ଆସେଁ, ପଧାନ ସାଇର କଅଁ ଖୋଲା ଥାନ ମୁଁ ଯାଇ ଠିକଣା କରିଦେବି । ତୁମେ ଆଗରେ ଯାଇ ଭାଗବତ ଘରଠି ଲୋକଙ୍କୁ ରହିବାକୁ କହ ।

ଚ—ଆଜ୍ଞା, ଆଜ୍ଞା ।    (ଜମ୍ପି ଚାଲିଗଲା)

(ଗାଆଁର ପବନା ଗଉଡ଼ ଆସି ଚଇତନିଆକୁ ପଚାରିଲା)

ପବନା — କିରେ ! କଅଣ ହେଲା ? ମୁଁ କହୁନାହିଁ ? ସାନବାବୁଙ୍କ କାନରେ ପଡ଼ିଲେ କଥାଟା ରହିବ । ଫେର୍ କେବେ ଦବାକୁ କହିଲେ ?

ଚ — କଅଣ ବା, କିରେ କଅଣ ଦେବେ ?

ପବନା — ଆରେ ଚାରିକୋଡ଼ି ନବା—ପାଞ୍ଚକୋଡ଼ି ଦବା । ଆମକୁ କଅଣ କିଏ ସେମିତି ଦେଇ ଦଉଛି ? ଏଥିରେ ସେ ରାଜି ହେବେ ନାହିଁ କାହିଁକି ?

ଚ—କିରେ କଅଣ ଚାରିକୋଡ଼ି ପାଞ୍ଚକୋଡ଼ି ?

ପଧାନ—ଧାନ ପରା ।

ରତନା — ଧାନ କଥା ଏଠି ପଡ଼ିଥିଲା ?

ପବନା — ଆଉ ?

ରତନା — ସାନବାବୁ କହିଲେ—ଆଜିଠୁଁ କାହାର ଗାଈ ମଇଁଷି ଏ ବନ୍ଧରେ ଗାଧୋଇବେ ନାହିଁ ।

ପବନା — ହଇରେ ଚଇତନିଆ ! ତୁ ଏବେ ଏଇଆ ସାନବାବୁଙ୍କ ଆଗରେ କହୁଥିଲୁ ? ମୋ ଗାଈ ମଇଁଷି ବନ୍ଧରେ ଗାଧୋଉଛନ୍ତି ?

ଚ—ହଇରେ, ମୁଁ ଏଇକଥା କହିଲି ? ସତରେ ତୋ ନାଁ ବାପ ମାଆ ବାଛିକରି ଦେଇଛନ୍ତି ପବନା ବୋଲି !

ସବନା — ସେଇଟି ଫଗ ଗଚନା କହୁଛି—
(ତିନେହେଁ କଳ ଲଗି ଗୁଲଗଲେ)

---

## ପଞ୍ଚମ ଦୃଶ୍ୟ

(ହରିପୁର ଗାଆଁ ଗଉନ୍ତଧର । ବେଦେବ୍ରାଣୀ ଖୁଆ ଧରି ଦନ୍ତ ମୁହଁ ଛି; କନକ—ବେହେବ ଝିଅ କୁଣ୍ଢେଇ ନେଇ ଖେଳବାରେ ଲଗିଛି ।)

କନକ—(କୁଣ୍ଢେଇଟିକି କୋଳରେ ଧରି ଗାଉଛି)

ନୂଆ ଖଡ଼ିଝଡ଼ି ଲୁଆ ଗଉଡ଼, ଲୋ ଶରଧା
ବୋହୁ ନେଇଯିବେ କନକା ଗଡ଼, ଲୋ ଶରଧା
ସେ ଗଡ଼ ବଇକ ଅଛି ଚନ୍ଦନ, ଲୋ ଶରଧା
ବାପେର ଅଉ ନ କର ମନ, ଲୋ ଶରଧା
ବୋହୂ ଭୂଅ ସୁନୀ ପେଟଲା ଦବୁ, ଲୋ ଶରଧା
ଶାଶୁ ଗୋହଟଲେ ଫେଲରି ହବୁ, ଲୋ ଶରଧା
ଟେଟେଲିଙ୍କ ନଣନ୍ଦ ବଡ଼ ଝଗଡ଼ାଳୀ, ଲୋ ଶରଧା
ତା ମନ ମନାଇ ଯିବୁ ତୁ ଚଳି, ଲୋ ଶରଧା
ଧାଣ୍ଟୁଣୀ ବଣ ତୁ କରିବୁ ନାହିଁ, ଲୋ ଶରଧା
ସୁଖ ଦୁଃଖ ସବୁ ଯିବୁଟି ସହି, ଲୋ ଶରଧା
ଦେଢ଼ଶୁର ଗୁଲ ଜଗିଥିବୁଟି, ଲୋ ଶରଧା

ବେଦେବ୍ରାଣୀ—(ଡାକିଲା) କନକ ! ତୋର ଆଉ ବେଉଡ ନାହିଁ,
ଗିଳିପିଟି ଦାଣ୍ଡ ଦୁଆରେ ବସି—

କନକ—ନାଇଁ ଲୋ ମାଆ, ଟିଅଟା ପଡ଼ି ଯିବ ଭୂଆଁର । ସଳପା
ଟିକଏ ନଟେଇ ଦେଉଥିଲି ଯେ—ମଳକୁଟି ଗୁଡ଼ି ଛଡ଼େଇ
ଦେଇ ଯାଉଚି ।

ବୈଦେହୀ—ମୁହଁ ପୋଡ଼ୁଲୋ ତୋ ଟିଅର; ଏଣେ ଘର
ଗୋଟାକର କାମ ପଡ଼ିଚି ଟି । ତାଆଁ ଧୁଆ ପେଟ ଉପରେ
କବାଟାଖଣ୍ଡ ଦେଇ ଶୁଆଇ ମୋକେଇଥିଲି, ଗଲୁ ଦେଖିବୁ,
ଉଠିଲା କି କଅଣ ?

କନକ - ଯାଉଚି, ଯାଉଚି, ( କୁଣ୍ଢାଇକୁ ଧରି ଉଠିଲା) ଗୁଆଲ ଲୋ
ଶଚପା ! ଆଇ ଗାଳଦେଲଣି ଟିର ! ତୁ ଆଉ ଅଙ୍କଟପଣ
କଚନା ।

(ପଘାଟା ହାତରେ ଧରି ଘର ଭିତରୁ ଆସୁଚି ବୈଦେହୀ—
ଏଣେ ତେଣେ ବୁହୁଁ ବୈଦେହୀର ଫେରତେ । କନକ ସେଇବାଟେ
ଘର ଭିତରକୁ ପଶିଯିବାବେଳକୁ ଅଧବାଟିଆରେ ବାପକୁ ଦେଖିଲା)

କନକ—ବାପା ! କଜଳିଟାକୁ—

ଗଉଡ଼ (କନକ ମୁହଁରେ ହାତଦେଇ ଚୁମା କରିଇ) ଚୁମା ହୋ !
ଦେବଟି ନଇଲେ ଏଇଲେ (ହାତ ଜୁଞ୍ଚେଇଲା)

କନକ (କାନ୍ଦଉଠି) ମାଆଲୋ !

ବୈଦେହୀ—(ଖୁଆବାଡ଼ ସହିତ ଦୌଡ଼ ଅସିଲା କହୁ କହୁ)
କଅଣ ଲୋ କନକ ! କଣ ହେଲା ? ( ଦେଖିଲା ବୈଦେହୀକୁ,
ଗାଈ ବାନ୍ଧି ଆଣୁଚି, ରଗିଗଲା) ରଇଜଳା ଫେରୁ ? (ଖୁଆବାଡ଼-
ଟକୁ ଟିଅ ହାତକୁ ବଢ଼େଇ) ଧରିବୁଟି ଲୋ କନକ ଖୁଆଟାକୁ,
[ଭିତରକୁ ପଶି ପଘାରୁ ଗାଈଟାକୁ ଫିଟେଇ ଦେଇ ] ଏଥର
ପଘ ଟାକୁ ନେଇ ଯା—ମନ ଯେବେ ହଉଚି ପଘାକୁ ଧକ୍ !
ନଇଲେ ପଘାରେ ଦଉଡ଼ି ଦେ । କାଲିଠଉଁ ସେଇ ରେଣ୍ଟି ଧରୁ

ବସିଛୁ—କଜ୍ଜଳୀଗାଈଟାକୁ ବିକିଲେ ପେଟ ପୂରିବ । ଦୁହାଁଳ ଗାଈ ବୋଲି ତ ସେଇ ପଠେଇ, ଗଉଁ ଚିଲୋଟା ଭଲି ଷୀର ଟୋପାଏ ପାଇବ କୋଉଠୁ ? କଅଣ ଚୋ ରକତ ଖାଇ ଜୀଇବ ଯେ ?- ହଳ ହବ କାହୁଁ, ପିଲାଏ ଜୀଇବେ କେମିତି ?

ବେହେରା—ଦେଖ୍ କନକ ମାଆ ! ଚତେ କାଲିଠଉଁ ବହୁତ କରି ବୁଝେଇଲି, ହେଲାନାଇଁ । ମୁଷା ଏକାଦଶୀ କରିବାକୁ ଘରେ ମଲ୍ଲଖଟେଇ ନାଇଁ । ବେଶୀ ବକାବକି କରନା, ମୁଁ ଗାଈ ନେବି, ନେବି, ନେବି ।

ବେହେରାଣୀ—ନବୁ ? ବାଛୁରୀ ଲଗା ଗାଈଟାକୁ ମୋର କଂସେଇକି ବିକିବୁ ?

ବେହେରା—ପେଟ ପୋଡ଼ିଗଲେ କଂସେଇକି କଅଣ ଲୋ, ଯମକୁ ବି ବିକିବି । କଂସେଇ ତ ଦେଢେଲ ଗାଈଟା ନେଇ ବି ପଇସା ଦବ । ଭେନ ଗାଆଁ ଟେଉ ଜଲେ କୁକୁର ମୁଠେ ମିଳିବାକୁ ନାଇଁ । ଗାଆଁ ମୁଣ୍ଡ ମୋଟଗୋଅ ଡ଼ଜ ଯା ଦେଖିବୁ, ଗୋରୁବକା ହାଟ ବସିଛି । ଭଲପୁଅ ଚ ଗୁହାଳ ଶୂନ କରି ବସିଲେଣି ! ଆଜି ମୁଁ ବି ଘୁରି ବେହେରା ମୁଣ୍ଡ, ଜଠ ଘୁଉ଼—କହୁଚି । ମୋତେ ରୋକ୍‌ନା ।

ବେହେରାଣୀ—ବିକିଲେ ବଳଦ ପଠେଇ ବିକ୍ । ସାଙ୍ଗଟା ତ ଚାରି ଫାଟ୍‌ଆରେ ଗଲା, ଏଇଟା ଆଜି କଅଣ କରିବ ଥାଇ ? ବିକୁନୁ ? ଗାଈ ବିକିଲେ ଜାଣିଥା, ମୁଁ ତୋର ଘରେ ଦଉଡ଼ି ଦେଇଦେବି ।

ବେହେରା—ଉଠ୍ ଉଠ୍, ଦଉଡ଼ି ଦେଲେ ଆଜ ମରନ୍ତୁ, ନହେଲେ ଅବା ଖାଇବା ବିନା କାଲି ମରିବୁ । ଉଠ୍, କଜ୍ଜଳି ଗାଈ ବିକ୍ ନାଁ । (ଠେଲିଦେଇ ଭିତରକୁ ଗଲା; ବେହେରାଣୀ ପଡ଼ିଗଲା)

ବେଦେବଣୀ— ମଟେଲ ନୋ ମାଅ—ମାର ମକେଇନ୍ ନୋ ବେ ପା !
( ଝିଅ କାନ୍ଦ ଉଠିଲା )

ଦାମା—(ଆସି ପହଞ୍ଚି) ଆଲୋ, ଆଲୋ, କଅଣ ଲୋ ବେଦେବଣୀ ?
କଅଣରେ ପବନା ! ଏ ଗୋଳମାଳ ?
( ବେଦେବୁଣୀ ଉଠିବେଦିଲା, ପବନା ବେଦେବୁ ଆସି ପହଞ୍ଚିଲେ )

ବେଦେବୁ—କ ପାଇବ ତୁମେ ସେଥିରୁ ପିଆଦା ବାବୁ ! ସେ ଆମ
ଦ୍'ଟବଣୀର କଜିଆ । ତେମେ ତମ କାମରେ ଯା, ସେ କଛି
ନୁହ ।

ବେଦେବୁଣୀ—କଛି ନୁହଁ ? ତେମେ ନଶାପ କରିବଟି ପିଆଦା ମୁଅ !
ଘରେ ଖାଇବକୁ ନାଇଁ । ଏ ବୋଇଲା ଦୁହଁ ଲ ଗାଈଟିକୁ
ବକିବ ଯେ, ମୋର ତ କଅଁଳା ପୁଅଟି । ଭଲ ଷୀର ଟୋପାଏ
ନ ହେଲେ ବଞ୍ଚିବ କେମିତି ?

ଦାମା—ଏ ତ ସତ କଥା, କରେ ପବନା ?

ବେଦେବୁ—ସତ ଯେ, ଗାଈଟିକ ଖ୍ୟାଇବ କଅଣ ? କୁଣ୍ଡା କୁଣ୍ଡ
ମାଣେ ହେଲେ ତ ! ପାଇବ କୋଉଠୁ ?

ଦାମା—ସତ କଥା । କଲୋ ବେଦେବୁଣୀ ! ପବନା ତ ସତ କହୁଚ ?

ବେଦେବୁଣୀ—କାହିଁକ ? ବଳଦ ପଟେ ଅଛି । ସାଙ୍ଗ ପଟକ ତ
ମରିଗଲା । ପଟିକଅଟେ ଥାଇ କଅଣ କରିବ ? ଗାଈକ ବକ
କଂସେଇଠୁଁ ଟଙ୍କା ଆଣିଲେ ବାକ ଏଇନେ--

ଦାମା - ସତକଥା, କେଇଟା ବା ଟଙ୍କା ହେବ ?

ବେଦେବୁ—ଆହେ ବାବୁ, ତେମେ ନଶାପ କଲ । ବଳଦଟି ଏ ଅଛି,
କାହା ସାଙ୍ଗେ ହେଲେ ଭଗୁଆକୁ ଭୂଇଁ ମାଣେ କଣେ ଚଷିଲେ
ଆଇଦାକୁ ଖନ୍ଦ କରିବ । ସେଇଟି ଗଲେ ତ ସବୁ ସଇଲା ।

ଦାମା —ସତ କଥା, ହଁ, ନୁହେଁ କଅଣ ?

ବେଦେହୀରାଣୀ —ମୋ କଥା ଶୁଣ, ଗାଈଟି ବିକିଲେ ତ କ୍ଷୀର ଟୋପାଏ ଆଉ ହବ ନାହିଁ । ଆମର ଦେବଦେହ ଘର । ଗୁହାଳରୁ ଲକ୍ଷ୍ମୀ ଗଲେ ଆଉ ରହିଲା କଅଣ ? କହୁନା—କେହିଁକି ଜାଣୁ ଜାଣୁ ଗାଈଟାକୁ ହାଣ ମୁହଁକୁ ଦବା ?

ଦାମା —ଆହା ହା, ଗୋ ମାତା ଟି ସେ !

ବେଦେହୀ —ଆଉ ପେଟ ପୋଡ଼ିଗଲେ ଗୋ ମାତା ! ଜମିଦାର ତ ଏତେ ପଇସାବାଲା ସେ ନଉନାହାନ୍ତି, ଗାଈ ଗୋରୁ ସବୁ କିଣି ନଅନ୍ତୁ, ଫେର୍ ଭଲ ବେଳ ହେଲେ, ଆମେ ତାଙ୍କ ଧନ ତାଙ୍କୁ ଦେଇ ଗାଈ ଗୋରୁ ନେଇ ଆସିବୁ ।

ଦାମା—ସେ ନେଇ ଏତେ ଗୋରୁ ଗାଈ କଅଣ ବେପାର କରିବେ ?

ବେଦେହୀ —କାହିଁକି ? କ୍ଷୀର ଖାଆନ୍ତୁ, ଗୃହ କରନ୍ତୁ, ଯାହା ମନ ତାଙ୍କର ।

ଦାମା—ହଉ, ବୁଝିବା, ବୁଝିବା, ବେଦେହୀରାଣୀ ! ଠିକା ମୁଁ କରେଇ ଦେବ । ତୁ ଯା ପଦନା । ଗାଈ ଏଇନେ ବିକ୍ନା—ଯା, ଭୂଆ ବଲେଇ ଦେରେ ମୁହଁକୁ ମୁହଁ ଦେଇ ଖୁଆ ଖୋଇ ହାଉଥିବ ଏଇଠି ଥାଇ—ଯା, ମୁଁ ସାଆନ୍ତଙ୍କୁ କହି ଟଙ୍କେ କନ୍ଟ୍ରାକ୍ଟ ଧାନ କରେଇ ଦେବ ।

ବେଦେହୀରାଣୀ—ଶୁଣିଲୁ ଶୁଣିଲୁ ? ବୋଇଲା ଗାଈ ବିକବ !

ବେଦେହୀ —ସେତକ ଫେର୍ ହେଲେ ତ ?

ଦାମା—ହଁ . ତୁ ଗଲୁ, ଯା'ଲେ ଝିଅ ! ଘରକୁ ଯା ।

ବେଦେହୀ—ହଉ, ହ ହନ ତକାଏଁ ତମ କଥାରେ । ଆ ଲୋ କନକ, (ଦୁହେଁ ଗଲେ) ।

ଦାମା—ହଇଲେ ! ବେଦେହୀରାଣୀ ! ସାନବାବୁ ଫେର୍ କଅଣ—

ବେଦେଇଶଣୀ—ମଲ, କ ମୋହିମା ନଚେଇଛୁ ସେ ଟୋକାଖଣ୍ଡକ ତାଙ୍କୁ ! ଏତେ ବଡ଼ ଘର ପିଲ, ବୋପା ତାର କଅଣ ବୋଲି, ଧନ ନାହିଁ, ବୃତ୍ତି ନାହିଁ—ଏଇ ବାଟେ ତ କେଜାଣି, ସତର ଥର ହବ—ବୋଗେଇଛୁ ଆଜ ।

ଦାମା—ତୁନ ହ, ତୁନ ହ, ଇଆଡ଼କୁ ଆ, ତୁ ଧାନ କ ଟଙ୍କାପାଇଁ ଘାବ ନା, ଏଣିକ ଆ, କହୁଛୁ ।

(ଦୁହେଁ ଗୁଲିଗଲେ)

---

## ସପ୍ତମ ଦୃଶ୍ୟ

(ଜଣେ ଭକାଣ୍ଡ ଗୀତ ଗାଇ ଗାଇ ଯାଉଛୁ)

ଗୀତ

ରବ ଛୁଇଁଲ ଆସି କାହିଁ ତଳକ
ହସ କାନ୍ଦକୁ ଦେଇ ଚୋଲି କ ।।୦।।

ଜାଳିବାକୁ ନାହିଁ କାହା ଘରେ ସଞ୍ଜସଳିତା,
ଖାଇବାକୁ ମିଳୁ ନାହିଁ ଖୁଦ, ପେଜ, ପଳିତା,
ଉଆଁସ କାହାଘରେ—ଆଖିରୁ ଲୁହ ଝରେ
ଛୁଆ ମୁହଁରୁ କାଟି, ମାଆ ତା ପେଟ ପାଳେ
ହସି କେ ପାଳୁଛି ଧବାଳିକ । ୧ ।

ପାଟ ପୀତାମ୍ବର କଏ ପିନ୍ଧୁଛି ଅସୁମାର,
ଗଣ୍ଠି କଟା ଖଣ୍ଡି ପେଡ଼ିଲୁଗା କାହାର,
ମୁଣ୍ଡ-ଝାଳ ଭୁଣ୍ଡରେ ମାରି, କେ ଧନ ସାରେ,
ଗଡ଼େ ଜଣେ କେ ବସି, କଏସେ ଘର କରେ
ଦୁନିଆଁରେ ଲାଗିଛି ଭେଳିକ । ୨ ।

(ଗାଇ ଗାଇ ଗୁଲିଗଲା)

## ଅଷ୍ଟମ ଦୃଶ୍ୟ

(ରଘୁଦାସର ଘର)

(ଖଣ୍ଡିଏ ଖଟିଆ ଉପରେ ଶୋଇଛି ରୋଗୀ ରଘୁ ଦାସ, ଘରର ଗୋଟିଏ କଣରେ ଜଳୁଛି ଧୀରେ ଧୀରେ ଗୋଟିଏ ଦେଶୀ ଲଣ୍ଠନ। ମୁଣ୍ଡ ଉପର ଆଡ଼କୁ, ଟିକଏ ଦୂରଛଡ଼ା ହୋଇ, ଖଣ୍ଡିଏ ଅପରିଷ୍କାର ପୁରୁଣା ଚୌକି। ଲୁହ ଆଖିରେ ରମା ପାପଟିଏ ପାଖରେ ବସି, ପଢ଼ୁଛି ଭଗବତ ଦଶମସ୍କନ୍ଧ। ଡାକ୍ତର ରୋଗୀର ନାଡ଼ୀ ଦେଖୁଛନ୍ତି। ଜମ୍ବୁ ଉଦ୍‌ବେଗ ଦୃଷ୍ଟିରେ ଚାହିଁ ରହିଛନ୍ତି ରୋଗୀକୁ ଓ ଡାକ୍ତରର ମୁଖ-ଭଙ୍ଗୀକୁ ଏବଂ ବେଳେବେଳେ ରମା ଆଡ଼କୁ)

ଜମ୍ବୁ—(କେତେବେଳ ପରେ ଡାକ୍ତରଙ୍କୁ ପଚାରିଲେ) କେମିତି—?

ଡାକ୍ତର—(ନାଡ଼ୀ ଛାଡ଼ି ଠିଆହେଲେ। କିଛି ଉତ୍ତର ନ ଦେଇ ଚାହିଁଲେ ରମା ଆଡ଼କୁ)

ଜମ୍ବୁ—ରମା, ପାଣି ମଗାଏ, ଡାକ୍ତର ବାବୁ ହାତ ଧୋଇବେ।
(ରମା ଉଭୟଙ୍କ ମୁହଁକୁ ଚାହିଁ ଚାଲିଗଲା)

ଡାକ୍ତର—(ଦୀର୍ଘ ନିଃଶ୍ୱାସ ମାରି) No hope, Nearing goal.

ରମା—(ବାହାରୁ ଡାକିଲା) ପାଣି।

ଡାକ୍ତର—ହୁଁ (ଭିତରକୁ ଯାଇ ହାତ ଧୋଇ ଆସି)—ତା ହେଲେ ଜମ୍ବୁବାବୁ—

ଜମ୍ବୁ—(ଦୀର୍ଘ ନିଃଶ୍ୱାସ ପକାଇ) ହଁ, ନମସ୍କାର! ସଙ୍ଗରେ ଚାଲେ, ଟିକେ ସମୟ ପରେ ଫେରିଆସି ଚୌକିରେ ବସିଲେ ଗମ୍ଭୀର ହୋଇ)

(ରମା ଆପଣା କାନରେ ହାତ ଚୋଟ୍ଟୁ ଚୋଟ୍ଟୁ ଆସିଲା, ଆଖି ଲୁହଭାରରେ ଫାଟି ପଡ଼ୁଛି; ଟିକଏ ଛୁଡ଼ା ହୋଇ ଜପ୍ପୀର ଅବସ୍ଥା ଲକ୍ଷ୍ୟ କରି କହିଲା )

ରମା — ଡାକ୍ତର ବାବୁ କଅଣ କହିଲେ ?
ଜପ୍ପୀ—(କିଛି ଶୁଣି ନପାରିବା ପରି, ନୀରବ)
ରମା—ବାପାଙ୍କ ଦେହ ଭଲ ହୋଇଯିବଟି ?
ଜପ୍ପୀ—[ଚେତନା ଲଭ କଲାପରି] ହଁ, ତୁମେ, ଭାଗବତ ପଢ଼ ।
ରମା—(ପୁଣି ପଢ଼ିଲା)
ରଘୁ - [ବ୍ୟସ୍ତ ହୋଇ] ରମା, ଓଃ, ଓଃ, ପାଣି ଟିକଏ —
ରମା—(ଧଡ଼ପଡ଼ ହୋଇ ଉଠିଗଲା ପାଣି ଆଣିବାକୁ)
ଜପ୍ପୀ—( ଉଠିଯାଇ ରଘୁଦାସର ମୁଣ୍ଡରେ ହାତ ରଖି ଆଉଁସିଲେ )
ରଘୁ—ସାନବାବୁ ! ଦେବତା ! ବହୁତ କଲେ ଗରିବଟା ପାଇଁ । ଯମ ପାଖେ,ଏଣେ ଆପଣ ପାଖେ । ବାକି ଦେବ ତ ବଡ଼ଲୋକ । ମୁଁ ଗଲିଲି ସାନବାବୁ ! ଓଃ, ଘାରି ଶେଷ । (ମୁଣ୍ଡ ଚିପି ଧରିଲା)
ରମା—( ପାଣି ନେଇ ଅସି ଚମକିଲା ପରି । ପାଣି ବଢ଼ାଇ ଦେଇ ଡାକିଲା ) ବାପା !
ରଘୁ—ଦେ, ଦେ, [ହାତ ବଢ଼ାଇଲା] [ରମା ପାଣି ଆଣି ପିଆଇ ଦେଲା ] ଓଃ, ଏଇ ସବୁ ଆସି ଗଲେଣି —
(ଜମିଦାର ଓ ଦାମା ଆସିଲେ, ଦାମା ଜମିଦାରଙ୍କୁ ଠାରି ଦେଖାଇ ଦେଲା ଜପ୍ପୀକି,ଜମିଦାର ବିରକ୍ତ ହୋଇ ଫେରି ଗଲେଗଲେ)
ରଘୁ—ମୁଁ ଯିବ,—ବାକି ରମା—
ରମା — ( କାନ୍ଦି ଉଠି ରଘୁ ମୁଣ୍ଡରେ ପଡ଼ିଗଲା ଚିତ୍କାର କରି ଡାକି) ବାପା !

ରଘୁ—( ହାତରେ ରମା ମୁଣ୍ଡ ଆଉଁସି) କାନ୍ଦନା । ସାନବାବୁ ! ଜଅନ୍ତାରେ ବହୁତ କଲେ ! ବାବୁ ! ବାକି ଗୋଟେ ଚିନ୍ତା— ନିଶ୍ଚିନ୍ତ ହୋଇ ମରି ପାରୁ ନାହିଁ, ଏଇ ରମା—ଏଇ ରମା—

ରମା—( ପୁଣି କାନ୍ଦି ଉଠିଲା ) ବାପା—

ରଘୁ—କେହି ନାହିଁ, ଅରକ୍ଷ । ରମା ଲାଗିଲା । ସାନ ବାବୁ ! ସାନ ବାବୁ ! ରମା ! ରମା !

(ଦୁହିଙ୍କ ହାତ ମିଶାଇଦେଲା, ତା ପରେ ସବୁ ଶେଷ)

(ରମା କାନ୍ଦି କାନ୍ଦି କରୁଡ଼ି ହୋଇ ପଡ଼ିଲା ବାପା ଗୁଡ଼ରେ)

ଜର୍ମ୍ମୀ—(ରମାକୁ ଟିକିଏ ଉଠାଇ ଧରାଇ ଦେଇ, ରଘୁଦାସ ମୁହଁରେ ଲୁଗା ଢାଙ୍କିଦେଲେ । ରମାର ହାତ ଧରି) ରମା—

—ଯବନିକା—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଗୃହଦ୍ୱାର ଆଗରେ ଗଛ ଗୋଟି କେତେ, କୁମାର ପୂର୍ଣ୍ଣିମାର ରାତ୍ର ଗୃହସ୍ଥ ତଳେ ଗାଆଁର ପିଲାମାନେ—ପୁଅ ଝିଅ-ମିଶି ପୁଚି ଖେଳୁଥିଲେ, ଗୀତ ଗାଉଥିଲେ, ନାନା ଆମୋଦ ପ୍ରମୋଦରେ ମାତି)

ଗୀତ

କୁଆଁର ପୁନେଇଁ ଜହ୍ନ ଲୋ, ଫୁଲ ବଉଲବେଣୀ,
କୁମାର କୁମାରୀ ହସ କଉତୁକେ ରାତି ମଣୁଥାଉଁ ଦିନ ଗୋ (ଫୁଲ)
ଚଳିଚଳି ତାଳ ଗଛ ଲୋ, ଫୁଲ ବଉଲବେଣୀ
କୋଉ ହରହାଟ ସଜଡ଼ା ପାଇଁକି କଣି ଅଣିଥିଲେ ଅଜା ଲୋ (ଫୁଲ)

ବଉଳ ଗଛର ଗୁଳ ଗୋ, ଫୁଲ ବଉଳବେଣୀ
ଘରର ଗହଳେ ଘନଅଁ ଗୁନ୍ଦଥି ଲୁଚୁକାଳି ଖେଳୁଥାଇ ଗୋ (ଫୁଲ)
ଯମୁନା କୂଳେ କାଳିଆ ଗୋ, ଫୁଲ ବଉଳବେଣୀ
'ରାଧା,ରାଧା'ବୋଲି ବଇଁଶୀ ବଜାଏ ଗହଳ ଫୁଲମାଳିଆ ଗୋ (ଫୁଲ)
ଧୋବ ଫରଫର ଜହ୍ନ ଗୋ, ଫୁଲ ବଉଳବେଣୀ
ରାଧା ଗୋଈ ମନ ଘରେ କି ରହିବ, ନ ଦେଖି କଳାବଦନ ଗୋ,
ଫୁଲ ବଉଳବେଣୀ ।

(ପିଲାଏ ଖେଳି ଖେଳି ଚାଲିଗଲେ)
( ରମା ଆଉ ସାବ କଥାବାର୍ତ୍ତା ହୋଇ ଆସିଲେ )

ସାବ—ମୁଁ ସବୁ ଜାଣିଛି ଯେ—

ରମା—ଯୋଗ ଏମିତି ପଡ଼ିଲା ଯେ, ତାଙ୍କ ଆଶରା ଛଡ଼ା ଆଉ ଗତି ନାହିଁ । କେତେ ଗାଁ ଲୋକଙ୍କ ନାକଟେକା, ଆଖିମରା, ଟାପରା, ଟାହିଲି—ଏ ତ ଦେହର ମଳି ହେଲାଣି ।

ସାବ—ହଁ, ବଡ଼ଲୋକ ତ ସେ, ତାଙ୍କୁ ପଦେ କହିବ—ଜିଭରେ ହାଡ଼ ଅଛି କାହାର ? ନୂଆଣିଆଁ ପାଣି ତ ତୋ'ର ।

ରମା—ସାବଲୋ ! ବାପା ଗଲେ, ମୁଁ ନିଆଁ ଲଗୀଟା ହେଲେ ଆଗରୁ ଯାଇଥାନ୍ତି ।

ସାବ—ମଲା, ମାଇଚି ଜନମଟି । ମଲା, ତୁ ତ ଆଗରୁ ଯାଇଥାନ୍ତୁ,ଆଲୋ ହଦଗଞ୍ଜି ହୁଅନ୍ତା କିଏ ? ଗାଁ ବାଲା, ସାଇବାଲା ଏ ଡର ମୋର ନାହିଁ ଯେ—ମୁଁ ଡରୁଛି ଖାଲି ବଡ଼ଲୋକ ମନକୁ, କେତେବେଳେ କୋଉ କଥା ଥାଏ, ନାହିଁ ନାହିଁ କଅଣ ଯେବେ, କେବେ ମନ ହୋଇଯିବ—

ରମା—ତାଙ୍କ ଧର୍ମ, ମୋର ବାଳ କାହିଁକି ଛାଇଁଛି—

ସାବ — ସାନବାବୁ ସେମିତ ନୁହେଁ ଯେ, ଏଇ ବଡ଼ବାବୁଙ୍କ କଥା (ହାତ ଦେଖି) ଆଚ୍ଛା, ମୁଦଟା କଅଣ କଲୁ ? ନାଇ ନାହିଁ ତ ?

ରମା — ତୁଟୁଙ୍କୁ ତ ମୁଣ୍ଡ ଟେକ ହଉ ନାହିଁ ଲୋ, ଆଉ ମୁଦ ନାଇଲେ ଫେର୍ —

ସାବ — କ ପାଇବୁ ଲୋ ଲୋକଙ୍କ କଥାରୁ ? କିଏ ପିଠିରେ ପଡ଼ିବ କ ତୋର ? ଲୋକେ ତାଙ୍କ ଘରେ ପାଟି କରୁଥାନ୍ତୁ, କଅଣ କହନ୍ତ ନାହିଁ "ଅରକ୍ଷିତ ମଞ୍ଜା ନାଁ, ଦୁଆରେ ପଡ଼ୁଛି ଛେଳି" ପଚୁରେ କିଏ ତାଙ୍କୁ ? ତୋ'ର ସାଙ୍ଗରେ ହେଲ-ମେଳ ହବାରୁ ମୋତେ ଏବେ କେତେ ଲୋକ କେତେ କଥା କହୁଛନ୍ତି, କହନ୍ତୁ ।

ରମା - ସାବ, ମୁଁ ତ ବୁଝିଛି, ତୁ ଆଉ ମୋ ସାଙ୍ଗରେ — ଯା, ଯା, ଫେର୍ ଯେବେ ଡାକେ କିଏ ଦେଖିବ —

ସାବ — (ଦୂରକୁ ଅନାଇଁ) ରମା ଲୋ, ଅନେଇଁଲୁଣି !

ରମା — ହଁ ଲୋ, ଗୁ'ଲେ, ଗୁ'ଲେ, (ଗୁଲି ଯାଉଥିଲେ)

କନକ — (ଆସି) ଆଲୋ ହେ ରମା ନାନୀ, ସାବ ନାନୀ, କଲୋ, କୁଆଡ଼େ ଗୁଲ ଯାଉଚ ? (ଦୁହିଁଙ୍କି ଟାଣି) ଆସ, ତମେ ଦୁହେଁ ଦୋଳରେ ବସକ — ମୁଁ ପହଞ୍ଚଇବ । କୁଆଡ଼େ ଗଲ ଲୋ ସବୁ — (ଅନ୍ୟ ଖେଳ ସଙ୍ଗୀମାନଙ୍କୁ ଗୁହିଁଲା)

ରମା — ମୋର ପରା କେତେ କାମ ଅଛି ତେଣେ —

କନକ — ଟିକିଏ ଖେଳକର ଯା, କୁଆଁର ପୁନେଇଁଟା —

ସାବ — ତେମେ ସବୁ ଡାକଉଳ ହେଇ ଖେଳୁଥା, ଆମେ ଏଇନେ ଆସୁ ନଉଁକ ?

(ଦୁହେଁ ତରତର ହୋଇ ଗୁଲଗଲେ)

କନକ—ଆସିବ, ଏକା, ମୋଗୁଣ; ବେଗେ ।
ରମା—(ଅନ୍ତରାଳରୁ ) ହଁ, ହଁ ।
(ପିଲମାନେ ଖେଳଲେ )
ଦାମା—(ଆସି ଉଣ୍ଡି) ଏଁ, ଏଠି ତ କେହି ନାହାନ୍ତି !
କନକ—ମଲ ! ହେମ, ମାୟା, ଧଡ଼ିଆ, ଅନନ୍ତ, ବାସନ୍ତୀ, ଆମେ ସମସ୍ତେ ଅଛୁଁ, କହୁଛ କଣ ନା କେହି ନାହାନ୍ତି !
ଦାମା—(ବଉଳ ମୁହଁରେ ମୁଣ୍ଡ ହଲାଇ ଚାଲି ଯାଉ ଯାଉ)—ଉଁ ହୁଁ ଃ
କନକ—(ଗୃହିଁ ରହିଲ, କିଛି ବୁଝି ନ ପାରି ଖତେଇ ହେଲା) ଉଁହୁଁ !
[ସବୁ ପିଲମାନେ ହସିଲେ]

———

## ଦ୍ୱିତୀୟ ଦୃଶ୍ୟ

[ଅନନ୍ତ ଓ କେତେକ ପ୍ରଜା ଗାଆଁ ଦାଣ୍ଡରେ କଥା ହେଉଥିଲେ]

ଅନନ୍ତ—ପରସ୍ପରକୁ ସାହାଯ୍ୟ ନକଲେ ଚଳିବ କପରି ?

ପ୍ରଜା—ଲୋକେ ସେଥିପାଇଁ ରାଜି ଅଛନ୍ତି, ଆପଣ ତ ବାଟ ଦେଖାଇ ଦେଇଛନ୍ତି । ବି.ଏ. ପାଶ କରିଛନ୍ତି, ଚାକିରି ବାକିରି କରିଥିଲେ ଖୁସିରେ ଥାନ୍ତେ । ଏଠି ଆମ ଗରିବଙ୍କ ପାଇଁ ମୁଣ୍ଡ ଖାଲି ଭୁଣ୍ଡରେ ମାରି, କୋଉଠି ଗାଁ'ର ଦଳ କଢ଼ା ହବ, କେଉଠି ଗାଆଁର ଜମି କମିଟି ଗୁଷ ହବ, ଏଇ ସବୁ କରି ଆମ ଆଖି ଫିଟାଇ ଦେଇଛନ୍ତି, ଆମକୁ ତ ଲାଗୁଛି, ଆପଣ ମଣିଷ ନୁହନ୍ତି—ଦେବତା ।

ଅନନ୍ତ—ମିଛରେ ମୋର ପ୍ରଶଂସା କରୁଛ କାହିଁକି ? ସ୍ୱାମୀଜି ନଥିଲେ, ମୁଁ ଜଣେ ଲୋକ, କିଛି କରି ପାରିଥାନ୍ତି ? ସମସ୍ତେ କାହ୍ନ

ଦେଲାକୁ ସିନା ? ଅନେକ କାମ ଆହୁରି କରିବାକୁ ଅଛି, ମନହେଲେ କରି ହଉଚି ବା କୋଉଠି ?

ପ୍ରଜା—ସବୁଥିକ ତ—ଆରେ ମଉସା, ଜଡ଼ ପଇସା ! ସର ଗୁଣିଲା ବେଳକୁ, ଜମିଦାର—କର ଦେଇ ଦେଇ ଆମେ ମରୁ ପଛକେ, ଧୋଇ ମରୁଡ଼ି ଯାହାହେଉ, ତାଙ୍କର କାଣି କଉଡ଼ିଟାଏ ହାନି ନହୁଏ ।

ଅନନ୍ତ—ମୁଁ ତ ଯାଉଚି ଆଜ । ସ୍ୱାମୀଜିଙ୍କ ସେବାସଦନ ଲାଗି ଚାନ୍ଦା ତ ଯାହା ଯେମିତି ଆଦାୟ ହଉଚି । ମୁଁ ଜମିଦାରଙ୍କୁ ଥରେ ଏ ବିଷୟ କହେଁ; ଦେଖେଁ, ସେ ଯଦି କିଛି ଦିଅନ୍ତି । ମୋର ଡେରି ହୋଇଯିବ, ମୁଁ ଯାଏଁ—

ପ୍ରଜା—ହଁ, ଆଉ ଗୋଟିଏ ଖବର ଶୁଣିଥିବେ ତ ? ଜମିଦାରଙ୍କ ପୁଅ ବାହାଘର ଯେ ତହସିଲଦାର ଶୁଣେଇ ଦେଇ ଗଲେଣି, ଘର ପିଛା ଚାନ୍ଦା, ମାଗଣ ।

ଅନନ୍ତ—ଜମିଦାରଙ୍କ ପୁଅ ବାହାଘର ? କଅଣ ଜମ୍ପୀର ?

ପ୍ରଜା—ବାବୁ, ସେ କଥା ଆମେ କି ଜାଣୁ ? ଜମିଦାରଙ୍କ ପୁଅ କଏ—କେତୋଟି, ବା କମିତି, ସେ କଥା ଆମେ ଜାଣିଲୁ କମିତି ? ପ୍ରଜାଏ ତ ଜମିଦାରଙ୍କୁ ଦେଖି ନାହାନ୍ତି । ଆଉ ଜମିଦାରଙ୍କ ପୁଅ ! ଖାଲି ଚାନ୍ଦା ଦେଲାବେଳକୁ ଜାଣୁ ଜମିଦାରଙ୍କ ବଂଶ ଅଛି ।

ଅନନ୍ତ—ଏ ଖବର ତ ମୁଁ ଜାଣି ନାହିଁ । ଯାଉଚି ଯେତେବେଳେ, ବୁଝିବି ।

ପ୍ରଜା—ଖଜଣା ଗଣ୍ଡାକ ଦବାକୁ ବଳ ନାହିଁ ଆମର, ତା ଉପରେ ପୁଣି ଏ ଛେଦା ଭେଦା ! ଅନନ୍ତ ବାବୁ, ପେଟ ପୋଡ଼ିଗଲେ ଆଖି ଭଲମନ୍ଦ ବିଚାର କରେ ନାହିଁ ଟି !

ଅନନ୍ତ— ଛି, ଛି, ଏଗୁଡ଼ାକ କଅଣ କହୁଚ ? ଯଦିବା ଏଇ ବାହାଘର
କଥା ସତ ହୋଇଥାଏ, ଜମ୍ଫି ଶୁଣିଲେ, ଏଇ ଗୁନ୍ଦା !
ଆଦାୟ କରାଇ ଦେବ ନାହିଁ । ମୁଁ ଯାଏଁ, ବେଳ ଯାଉଚି ।
ପ୍ରଜା – ଯାଆନ୍ତୁ, ବାକି ପେଟ ଚାଞ୍ଚ ରହୁଚି, ତହସିଲଦାର ଯେମିତି
ଜୁଲମ କରୁଛି !
ଅନନ୍ତ — ଆଚ୍ଛା, ସମ୍ଭାଳ ନିଅ ଟିକିଏ, ମୁଁ ଆସିବା ଯାଏଁ ।
ପ୍ରଜା—କମ୍ଫିର ଆସି ମଣ୍ଟି ନଷ୍ଟରେ କଲଣି, ଆଉ ସମ୍ଭାଳ ସମ୍ଭାଳ
କଥା ! – କେଜାଣି ?

( କହି କହି ଗ୍ଲଲଗଲା )

---

## ତୃତୀୟ ଦୃଶ୍ୟ

[ ଜମିଦାରଙ୍କ କଚେରୀ ଘର, ଗୁମାସ୍ତା ହିସାବ ମିଳେଇ ବସିଛନ୍ତି । ଜମ୍ଫି ଗୋଟିଏ ଖାତା ଧରି ହିସାବ ତନଖି କରୁ କରୁ ନିହାତି ଅନ୍ୟମନସ୍କଭାବେ ଆଉ ଖଣ୍ଡେ କାଗଜ ଟାଣି ଲେଖୁଛି ]

( କବିତା )

ସେ ନହୁଲି ବୟସୀ କାଖରେ କଳସୀ
ଗତି ମନ୍ଥର ତା'ର,
କିଏ ଜାଣିଥିଲା ପଡ଼ିଯିବ ଧରା
ଆଖି ସଙ୍ଗେ ହେବ କାଳ । ୧ ।
କୋଇଲିଟା ପୁଣି, ବେଳ କାଳ ଜାଣି,
ଝୁଣ୍ଟା ଆମ୍ବ ଡାଳେ ଥାଇ,
କୁହୁ-କୁହୁ କହି ଜଳଜଳ ଚାହିଁ
କରିଲା ଯେତିକ ଟାହି । ୨ ।

ବାଉଳା ପବନ, ନ ହେବା ମରଣ !
ଏତକବେଳକୁ ଥିଲୁ,
ବାସ ଚହଲାଇ ଭଗାର ଆଖିରେ
ବୟସ ଚହ୍ଲାଇଦେଲ । ୩ ।

ସୁମାସ୍ତା—ରାସବହାରୀ ସାହୁ, ରାସବହାରୀ ସାହୁ, ଗତ ସନ ୫, ଏସନକୁ ୧୧, ମୋଟ ଜମା—ମୋଟ ଜମା ୧୬ । ଧଡ଼ି ଜେନା—ପିତା କୁଳମଣି ଜେନା, ଗତ ସନ ୩।⁄, ହାଲ ୫, ଗାଏ ୮।⁄ । ରସିକ ଶେଖର ଭାଗୁପଣ୍ଡା, ଗତ ୧୦⁄, ହାଲ ୭।, ଗାଏ ଟ୧୭।⁄ । ଶାମ ସାହୁ—ପିତା ରାମ ସାହୁ, ଗତ ସନ ୧୨, ଏ ସନକୁ ୧୫, ଗାଏ ମୋଟ ୨୭ । ରମାଚରଣ ଦାଶ, ରମା, ରମା, ରମା, ରମା ( କନ୍ଦ ଧାନ୍ଦ୍ରମନ୍ତ—ଜମିର ଚେତନା ଆସିଲା, ସେ ଚମକି ଉଠିଲେ ରମାର ନାଁ ଶୁଣି) ।

ଜମ୍ମୀ—ସେଇଟା କେତେ କହୁଲ ବିପିନ ?

ବିପିନ - (ଖାତା ସହିତ ଉଠି) ଆଜ୍ଞା !

ଜମ୍ମୀ—ମୋ ନାଆଁରେ ବାକି କେତେ ?

ବିପିନ—ଦେଖୁଚ, ରମା, ରମା, ଗତ ଟ୭୯ ଙ୍କା ହାଲ ଅଢ଼େଇ ମୋଟ ଟ୯୯ ।

ଜମ୍ମୀ—ଓଃ, ସେଇଟା ସେ ଦାଖଲ କରି ଦେଇ ଯାଇଚି ମୋ ପାଖେ ମଉଦେବନକୁ, ହେଇଟି ନିଅ । ଅସୁଲ ଦେଇ, ଖାତାରୁ ରମା ନାଆଁଟା କାଟି ଦିଅ । ( ଟଙ୍କା ବ୍ୟାଗରୁ ଦେବା )

ବିପିନ—( ଟଙ୍କା ନେଇ ଖାତାରେ ଅସୁଲ ଦେଇ, ପୁଣି ଉଠି ଆସି ଜମ୍ମୀ ପାଖକୁ ) ଅଜ୍ଞା, ବିଅ.କ ଘରଟାରେ କାହା ନାଆଁଟା ପକାଇବ ?

ଜମ୍ବୁ—ଖୋଦ୍ ।
ବିପିନ—( ଜମ୍ବୁ ଆଡ଼କୁ ହାତ ଦେଖାଇ ) ଖୋଦ୍ ?
ଜମ୍ବୁ—ଏଁ ମୁଁ ? କହିଲ ପରା, ସେ ପଅରଦିନ ମୋ ପାଖେ ଦେଇ
ଯାଇଚ ବୋଲି ।
ବିପିନ—( ବେକ କାଟି ବଢ଼ାଇଲା )
ଜମ୍ବୁ—ଓଃ ହଁ, ତୁମେ ରଖିଥାଅ ନା । ( ବିରକ୍ତ ହେଲେ )
ବିପିନ—( ଗୁଳ ଯାଇ ରଖିଲା )
ଜମ୍ବୁ—ହଁ, ମିଆଦା ଅସୁଲକୁ ଯେଉଁ ଚାଲକାଠା ଦଉଚ, ସେଥିରୁ
ରମା ନାଁଟା କଟା ହୋଇଥିବ ଯେମିତି ।
ବିପିନ—ଆଜ୍ଞା ହଁ, ସେ ନ ପଇଟ ପଡିଗଲା, ଆଉ—
ଜମ୍ବୁ—(ପୂର୍ବବତ୍ ମୁହଁ ପୋଡି ) ହୁଁ ।
ବିପିନ—ହେଇଟି, ପାଉଡିଟା ପରା ଫଡ଼ା ହୋଇଗଲା, ସେକ୍ ଟୋକ୍
ହବାକ୍ ଚକ୍ତ ।
ଜମ୍ବୁ—( ଅନ୍ୟମନସ୍କଭାବେ କଥାଟା ଶୁଣୁଥିଲେ, ଚମକି କହିଲେ )
"ଚକ୍ତ" ?
ବିପିନ—ଆଜ୍ଞା ହଁ, ଗୋଟେ ଚକ୍ତ ଯେତେବେଳେ—
ଜମ୍ବୁ—ଚକ୍ତ ହେଇଚ କିଏ କହିଲା ?
ବିପିନ—ଆପଣ ?
ଜମ୍ବୁ—(କଥାରେ ବାଧା ଦେଇ ) ମୁଁ, ମୁଁ, ଚକ୍ତ ହେବାର କଥା
କହିଲି ? ମୋଠୁଁ ଶୁଣିଲ ତୁମେ ?
ବିପିନ—ନାଇଁ ଯେ, ଯାହା ଦବାର ପରା ସେ ଦେଇ ଦେଇଛୁ !
ଜମ୍ବୁ—ଚୁପ୍ କର; ମାଲିକ କଥାରେ ମୁଣ୍ଡ ଛୁଞ୍ଚେଇବା ପାଇଁ ତୁମକୁ
ଚାକର ରଖାଯାଇନାହିଁ, ନିଜର କାମ ଦେଖ Nonsense.

ବିପିନ—(ଚାହିଁ କିଛି ବୁଝିଲା ନାହିଁ, କାମରେ ଲାଗିଲା, ପୂର୍ବପର ଚାହିଁକରି ) ଆଜ୍ଞା !

ଜମି- ( ତୀବ୍ର ଦୃଷ୍ଟିରେ ଗୁମାସ୍ତାଙ୍କୁ ଥରେ ଚାହିଁ ପୁଣି କଳ୍ପନା ରଚନାରେ ଲାଗିଲେ, ସମସ୍ତ ଭାବଗୁଡ଼ା ତାର ଗୋଳମାଳ ହୋଇଗଲା ) ନାଃ ( ଉଠି ଚାଲିଯାଇ – ପୁଣି ଫେରିଆସି ) ଏ ବିପିନ ? ମୋଠି କିଛି କାମ ଅଛି ?

ବିପିନ—(ଟଟ୍ ଉଠି ଗୁଡ଼ାଏ ଚଉଠିକିଆ କାଗଜ ଧରି) ଆଜ୍ଞା, ଏଇ--

ଜମି—( ଚାହିଁଲ କାଗଜକୁ ) ଏଗୁଡ଼ା ଏବେ ଦସ୍ତଖତ କରିବାକୁ ମୋର ବେଳ ନାହିଁ, ତମେ କରି ପଠେଇଦିଅ ।

( ଚାଲିଗଲେ)

ବିପିନ—(ତଳେ ପଡ଼ିଥିବା କାଗଜଗୁଡ଼ା ଉଠାଉ ଉଠାଉ) ନାଃ, ଏଠି ଚାକିରି ଆଉ ସହଜ ନୁହେଁ, ଦାନା ଉଠିଲାଣି ଆମର । ବଡ଼ବାବୁ କହିଲେ—ସାନବାବୁଙ୍କୁ ସଦାବେଳେ କାମରେ ପୂରେଇ ରଖ, ହୁକୁମନାମା କେଇଖଣ୍ଡ ଦସକତ୍ କରିଦବାକୁ —କହୁଚନ୍ତି, ଏବେ ଦସକତ୍ କରିବାକୁ ମୋର ବେଳ ନାହିଁ, ତମେ କରି ପଠେଇ ଦିଅ । ହୁଁ; ବାହାରିଲେ ସେ ତାଙ୍କର – ( ଅନ୍ୟମନସ୍କଭାବେ ସାନବାବୁ ମେଲେଇଥିବା ବହିଟାକୁ ବନ୍ଦ କଲା )

( ଜମିଦାର ଏତିକିବେଳେ ଆସିଛନ୍ତି ଫେରି କଚେରୀକୁ )

ଜମିଦାର—କାହାର ? ଏଁ ?

ବିପିନ—( ବସିବାକୁ ଯାଉଁ ଯାଉଁ ଉଠି ) ନାଇଁ ଆମର ଏଇ—

ଜମିଦାର – ସାନବାବୁ ! ସାନବାବୁ କାହିଁ ?

ବିପିନ – ଏଇ ହୁକୁମନାମାଗୁଡ଼ା ଦସକତ୍ କରିବାକୁ ଥିଲା ତ—

ଜମିଦାର – କାହିଁକି ? ସାନବାବୁ କଲା ନାହିଁ ?

ବିପିନ—ସେ ତ ସେଜନାମଟି ଦେଖୁଥିଲେ, ହଠାତ୍ ଉଠି ଏ କାଗଜଗୁଡ଼ା ଦସ୍ତଖତ୍ ନ କରି, କୁଆଡ଼େ—

ଜମିଦାର ବାହାରିଗଲେ, ନାଁ ?

ବିପିନ—(ନୀରବ)

ଜମିଦାର—(ବସି) ନାଁ, ତୁମେ ଗୋଟିଏ ନିହାତି ଅପଦାର୍ଥ । କହିଲି, ତାଙ୍କୁ କାମରେ ଭୁଲେଇ ରଖ, ଏଇତକ ପାରିଲ ନାହିଁ, ଆଉ କଅଣ କରିବ ତୁମେ ? ଜମିଦାର ପଇସାରେ ପୁଅ ବାହାଘର, ଘରତୋଳା—ଏଇ ତୁମର କାମ, ନାଁ ? ଆଣ ସେ କାଗଜଗୁଡ଼ା ।

ବିପିନ—(କାଗଜ ନେଇ ଦସ୍ତଖତ୍ କରାଇଲେ)

ଜମିଦାର—(ଦସ୍ତଖତ କରୁ କରୁ) ସେଜନାମଟି କାହିଁ ?

ବିପିନ—(ଗୋଟେ ମୋଟା ବନ୍ଧା ଖାତା ଆଣି ଟେବୁଲ ଉପରେ ଥୋଇଦେଲା)

ଜମିଦାର—(ଖାତା ଖୋଲି ଦେଖନ୍ତି ଖଣ୍ଡିଏ କାଗଜରେ କବିତା ଲେଖା, ତାଙ୍କୁ ପଢ଼ି) ଏ କଅଣ ସେଜନାମଟି ?

ବିପିନ—ଆଜ୍ଞା, ସନାତନବାବୁ ଲେଖନ୍ତି, ପ୍ରତିଦିନର ଏଇଟା ହିସାବ କିତାବ୍ (କହି ଅନ୍ୟ କାଗଜ ଆଣିବାକୁ ଗଲା)

ଜମିଦାର—(ଗମ୍ଭୀର ହୋଇ) ହଁ, ପ୍ରତିଦିନର ହିସାବ କିତାବ୍ ?

ବିପିନ—ଆଜ୍ଞା !

ଜମିଦାର—ଏଇ, ତା' ହେଲେ ପ୍ରତିଦିନର ହିସାବ କିତାବ୍, ନାଁ ?

ବିପିନ—ଆଜ୍ଞା ହଁ, ଆଜକାଲି ଟିକିଏ ସେମିତି ବେଶୀ ହଉଚି ।

ଜମିଦାର ଏଁ ?

ବିପିନ—କାଲି ମହରଗ ନାଁ, ଖର୍ଚ୍ଚ ଟିକିଏ ପିଆଦା ପଡ଼ୁଛି ।

ଜମିଦାର — (କାଗଜ ଦେଖାଇ) ଦେଖ୍ତୁ, ଏଇ ଉମର ରୋଜନାମଚ୍ଚ !
(ଗୋଟିଏ ଧାଡ଼ି ପଢ଼ିଲେ)
ସେ ନଅୁଲା ବଧୂ ସୀ କାଖରେ କଳସୀ ଗଣ୍ଡି:ମନ୍ଥର ଛା'ର,
କଏ ଜାଣିଥିଲା ପଡ଼ିଯିବ ଧରା, ଆଖି ସତେ ହେବ କାଳ ? ଉଁ !
ଦପିନ — (ଚମକି) ଆଜ୍ଞା ! ସେଇଟା ତ ମୁଁ ଦେଖି ନାହିଁ । ବଢ଼ଆନ
ବାବୁ ତ ଆଜକାଲ ଆଉ ସମ୍ବାଦ ଲେଖନ୍ତି ନାହିଁ, ସାନବାବୁ
ବରାବର ଏବେ—
ଜମିଦାର — ଠିକ୍, ଦେଖ୍ତୁ ଏଇ ଗୀତରେ ରୋଜନାମଚ୍ଚ ? —
ଦପିନ — ଆଜ୍ଞା ହୋଇଥିବ (ହସି), ସାନବାବୁ ତ ଆଉ ବଢ଼ଆନ ବାବୁ
ନୁହନ୍ତି ! ସେ କେଡ଼େ ପାଠୁଆ, ଗୃହଘର ପୁଅ ଗୃହ !
ଗୀତରେ ଲେଖିଥିବେ, ବଢ଼ଆନବାବୁ ଯେତେହେଲେ—
ଜମିଦାର — ଚୁନ ହ, ସାନବାବୁ କୁଆଡ଼େ ଗଲା ?
ଦପିନ — ହଠାତ୍ ଉଠି—
ଜମିଦାର — ଗଲା କୋଉଠିକି ?
ଦପିନ — ଅନନ୍ତବାବୁ ଆସିଛନ୍ତି, ତାଙ୍କ ଆଡ଼େ ବୋଧହୁଏ—ମୋତେ
କହି କରି ଯାଆନ୍ତି ନାହିଁ ତ !
ଜମିଦାର — ଅନନ୍ତ ଏଠିକି ଆସିଥିଲା ?
ଦପିନ — ନାହିଁ ତ ।
ଜମିଦାର — ତାହେଲେ ଦୁନିଆଁରେ ଉମ ପରି ଆଉ ଗୋଟେ ମୂର୍ଖ —
ଦପିନ — ମୁଁ ଖୋଜିଆଣେ ଆଜ୍ଞା —
ଜମିଦାର — ଆଜ୍ଞା ନା, ଦର୍କାର ନାହିଁ । ଦାମା କାହିଁ ?
ଦପିନ — ଦାମା, ଦାମା, ଆରେ ଦାମା, ସାଆନ୍ତେ ଡାକୁଛନ୍ତି; ଦାମା,
(ଡାକ ନ ଶୁଣିବାରୁ ଚୁନ ହୋଇ ଜମିଦାରଙ୍କ ପଛପଟ
ଦେଇ ଚାଲିଗଲା )

ଜମିଦାର — ନାଃ—
ବିପିନ—(ଫେଲ) ନାଃ (ଗୁରୁଆଜ୍ଞେ ଗୁହ୍ନାଁଙ୍କ ବୋକାପଣ)

---

## ଚତୁର୍ଥ ଦୃଶ୍ୟ

ହରପୁର ଗ୍ରାମ ପଥ

[କଥା ହୋଇ ଅସୁଥିଲେ ରମା ଓ ସାବି]

ସାବି—ହୁଁ, ବଡ଼ଲୋକର ମନକୁ, ନାଁ ? ଆଉ ତୋ ମନକୁ ଯିଏ ଚାହିଁଛି ତା କଥା ତ କହିଲୁ ନାହିଁ ? ଲୁଚାଉଚୁ ମୋତେ ? ତୋ ମନେ ମନେ ମୁଁ କଣ ଦେଖି ନାହିଁ, ନାଁ ?

ରମା—ଦେଖିଚୁ ତ, ଆଉ ପଚାରୁଚୁ ତେବେ କଅଣ ?

ସାବି—ସାନବାବୁ ତ ଟଙ୍କା ଦେଇ ପଠେଇଥିଲେ, ତୁ ନେଲୁ ନାହୁଁ କାହିଁକ ? ଚଳବୁ କେମିତି ? ମଞ୍ଜୁସା ତ ନାହିଁ ଯେ ଗେଲବସର ଝିଅ ହବୁ ?

ରମା— ହାଇଲୋ ସାବି, ଟଙ୍କା କଅଣ ଏଡ଼େବଡ଼ ହେଲା ତୋ ଆଖିରେ? ଆଉ—

ସାବି—ସଜ ଥିବ କି ଅସଜ ଥିବ, କାହିଁକ ଅବା ଆସି ପାର ନ ଥିବେ, ଏଇଥିକ ଏଡ଼େ ରୁଷା—

ରମା—ରୁଷା ! ମୁଁ ରୁଷିବି କାହା ଉପରେ ଲୋ ସାବି ?

ସାବି—ହଉ ହଉ, ଯାହା ତ କଲୁ କଲୁ, ଘରକୁ ଚାଲ ।

ରମା—ନାଇଁ ଲୋ ସାବି, ମୁଁ ଯାଉଛି ବେହେରା ଘରକୁ ।

ସାବି—ବେଳବୁଡ଼ ଥାରେ ପୁଣି ବେହେରା ଘରକୁ କାହିଁକ ଯିବୁ ମ ?

ରମା —ବେହେରାଘର ଧାନ ନେଇଥିଲି, ଚାଉଳ କୁଟାକୁ ଯେ—

ସାବ—କୁଟାକୁ ତୁ ନେଇଥିଲୁ ଧାନ ? ମଉସା ଗଲାଦିନୁଁ ତ ଚିନ୍ତାରେ ହାଡ ମାଉଁସ ହୋଇ ଢପଲ ନାହିଁ ତୋ'ଠି; ତୋ ଦେହରେ ବଳ କାହିଁ ?

ରମା—ଅଛି, ପେଟ ଯେତେବେଳେ ପୋଡ଼ିଯାଏ, ବଳ ଗୁଏଁ ଗୁଏଁ ଆସେ ।

ସାବ—ପେଟ,ପୋଡ଼ୁଛି ? ତୋର ? କାହିଁକ ମ ? ଚନ୍ଦ ଆଡ଼ୁଆଳରେ ଅଛୁ, ତୋର କ ବନ୍ଧା ମ ?

ରମା—ନାଇଁ, ମୋର ଚିନ୍ତା ନାଇଁ କଛି ଯେ—

ସାବ—ତେବେ କୁଟାକୁଟି କର ଚଳୁଛୁ ବୋଲି କହିଲୁ ?

ରମା—ଖୁସିରେ ।

ସାବ—ହିଁ, ଖୁସିରେ ? କେବେଠୁଁ ମ ? କେବେଠୁଁ ଏତେ ଚଲାକ ହେଲୁ ? ମୋଠୁଁ କଥା ଛପାଉଛୁ —ଚାଲିବୁଟି ଆମ ଘରକୁ, ମୁଁ ସବୁ ଶୁଣେ ଆଗେ ତୋ'ଠୁ, ଆ—(ଟାଣି ନେଇଗଲା) ଆସିବୁଟି ?

ରମା—ନାଇଁ ମ କାଲି ଯିବି—ମୋର ପର ଟିକଣେ କାମ ଅଛି ।

ସାବ—ଉଃ, କାମ, ଚାଲ୍ (କାନ୍ଧ ଟାଣିଲା)

(ଏତିକିବେଳେ ଖୁବ୍ ନିକଟରେ ଶୁଭିଲା ସାଇକେଲ ଘଣ୍ଟି । ସାବ କାନଟାକୁ ଗୁଡ଼ିଦେଇ ରମାକୁ କହିଲା]

ସାବ—ସାଇକେଲ୍ ଘଣ୍ଟି ଶୁଭୁଚ ପାଖଟାରେ— ସାନବାବୁ ହୋଇଥିବେ ଲୋ !

ରମା—ଯିଏ ହଉ, କଏ ଜାଣେ ।

(ସନ୍ତୋଷ କାନ୍ଥକୁ ଯାଇ ଦୁହେଁ ପିଠିକରି ଆଡ଼ ହୋଇଗଲେ]

ସାବ—ଆଲୋ, ସାନବାବୁ ତ !

ରମା—( ସାଇକେଲ ଯିବାପରେ ରାସ୍ତାକୁ ଆସି ) ଦେଇଥିବେ, ଚାଲ୍'ଲେ, ତମ ଘରକୁ ଯିବା ପରା ?

ସାବ—ଆମ ଘରକୁ ଯିବୁ !

ରମା—ହଁ, ଚାଲ ।

ସାବ—(ନ ଯାଇ ତଟସ୍ଥ ହୋଇ ଚାହିଁ ରହିଲା ରମା ମୁହଁକୁ)

ରମା—[ସାବର କାନ ଟାଣି] ଆସୁନଉ କାହିଁକି ମ, ଆ'ମ, ଆସ୍ ।
( ଚାଲିଗଲା । ସାବ ପଛେ ପଛେ ଗଲା)

---

## ପଞ୍ଚମ ଦୃଶ୍ୟ

( ଜମିଦାର କକ୍ଷ—ବଜପ୍ପା—ଗୀତ ଗାଉଛି )

ଗୀତ

କାନେ କାନେ ରେ କହ ଧୀରେ ଧୀରେ
ମନ୍ଦ ସ୍ୱରେ— ଗନ୍ଧ ସମୀର
ସେ କି ମୋର ଆସିବ ରେ ?
ଫୁଲ ସେ ବନ କହୁଛି ବନ୍ଧୁ ! ମନର କଥା ଜାଣୁ ପରା ଙ୍କୁ
ଚନ୍ଦ୍ର ଭୁଲେ ବସିଛୁ ମିତ
ଗୋପନେ ଗୋପନେ, ନିଶୀଥର ସପନେ
ଛୁଇଁ ତନୁ, ମଲାଣି ଗୋ ଅଧରେ ।

ବଜପ୍ପା—(ଗୀତ ଗାଇସାରି ବସି 'ସରକାର' ପଢ଼ୁଥିଲା, ପଛରୁ ଆସିଲା 'ଇନ୍ଦ୍ର' ଯେ ତା ମାଁ ପ୍ରକୃତରେ 'ରତ୍ନ' । ଅଳ୍ପ ବୟସର ଝିଅଟିଏ—ଦରହସ ମୁହଁଟି, ପଛରୁ ଆସି ବଜପ୍ପା ହାତରୁ

ବହିଟା ଟାଣିନେଲା । ବିଜୟା ପଛକୁ ଚାହିଁ ଦେଖେ, 'ଅଲି' ବହିଟା ଧରି ହସୁଛି ।)

ବିଜୟା—ଅଲି, ଦେ, ବହିଟା ଦେ ।

ଅଲି—(ହସି) ନାହିଁ ।

ବିଜୟା – ଦେ, ମୁଁ ପଢୁଥିଲି ପରା, ତୁ ବହିଟା କଅଣ କରିବୁ ?

ଅଲି – ଅଜା କାହାନ୍ତି ?

ବିଜୟା—କୋଉଠି,ସେ ଘରେ ଥିବେ ନା ! ଦେଖ୍ ଯା, ବହିଟା ଦେ ।

ଅଲି—ନାଁ, ଅଜା କାହାନ୍ତି ଆଗ କହ ।

ବିଜୟା—ତୁ ଏଠିକି ଆ, ନ ଆସିଲେ କହିବି ନାହିଁ, ଆ ମୋ ପାଖକୁ ।

ଅଲି—[ ପାଖକୁ ଆସି ] କଅଣ ?

ବିଜୟା—[ହାତ ଧରି ପକାଇ] ମୋ ସୁନା ଝିଅଟି ପରା, ଅଲି କଅଣ କେମିତି କି ? ଭାରି ଭଲ ପିଲା, ଦେ, ବହିଟା ଦେ । (ବହି ନେଇ) ବସ୍, ତୁ ପରା ଗୀତ ଶିଖୁଚୁ ?

ଅଲି—ହଁ, ଗୀତ ଶିଖୁଚି, ନାଚ ଶିଖୁଚି ।

ବିଜୟା---ହଁ, ନାଚ ବି ଶିଖୁଚୁ ? କାହିଁ କେମିତି, ନାଚିଲୁ , ଦେଖେଁ ?

ଅଲି---ଉଁ ! [ଲାଜ କଲା]

ବିଜୟା--ଛି, ସୁନାଝିଅମାନେ ଏମିତି ଲାଜ କରନ୍ତି ? ନାଚ ତତେ ଭଲ ହବ ଦେଖ । [ଘୁଙ୍ଗୁର ଆଣି ବାନ୍ଧିଦେଲା ଓ ଅଲି ନାଚିଲା ]

ବିଜୟା--ବାଃ, ଭାରି ସୁନ୍ଦର ନାଚୁଛୁ ତ, ଅଜା ତୋ ନାଚ ଦେଖିଲେଣି ?

ଅଲି – ନାଁ ।

ବିଜୟା – ଆହା,ଅଜାଙ୍କୁ ତୋ ନାଚ ଦେଖାଇ ନାହୁଁ ? ସେ ଦେଖିଲେ ତ ଭାରି ଖୁସି ହେବେ, କେତେ ଗେଲ କରିବେ ତତେ ।

ଅନନ୍ତ—[ ଡାକଲେ ନେପଥ୍ୟରୁ] କଅଣ କରୁଛୁ ବଜପ୍ପା ?
ବଜପ୍ପା—(ଡାକ ଆଡ଼କୁ ଚାହିଁ) ଓ, ଅନନ୍ତ ବାବୁ, ଆସନ୍ତୁ,ଆସନ୍ତୁ ।
ଅନନ୍ତ—(ଅଭକୁ ଦେଖି) ଏଇଟି ?
ବଜପ୍ପା—ଏଇଟି ଆମ ବାପାଙ୍କର ନାତୁଣୀ ।
ଅନନ୍ତ—ନାତୁଣୀ ?

ବଜପ୍ପା—ରସାନନ୍ଦ ବାବୁ ଡେପୋଟି ଟ୍ରାନ୍‌ସଫର ହୋଇ ଆସିଛନ୍ତି ସମ୍ବଲପୁରରୁ ଯେ, ତାଙ୍କର ଝିଅ—ଆମ ପଡ଼ଶାରେ ଅଛନ୍ତି, ବାପା ତାକୁ ନାତୁଣୀ କରିଛନ୍ତି ।

ଅନନ୍ତ—ଓଃ ।
ବଜପ୍ପା—ଅନନ୍ତ ବାବୁଙ୍କୁ ନମସ୍କାର କରିଦେ ଅଭ !
ଅଭ—( ଅନନ୍ତ ବାବୁଙ୍କୁ ନମସ୍କାର କଲା )

ଅନନ୍ତ—ନମସ୍କାର ! (ପିଲାକୁ କୋଳେଇ) ଅଭ ? ଝିଅଟି ନାଁ ଅଭ ?
ବଜପ୍ପା—ଅଭ ନୁହେଁ ଯେ ତା ନାଁ ଇଭ—ବାପା ତାକୁ ଗେଲରେ ଓ କହନ୍ତି ଅଭ ।

ଅଭ—ମଉସି ! ମୁଁ ଅଜାଙ୍କ ପାଖକୁ ଯିବି ।
ବଜପ୍ପା—ସେ ଶୋଇଲା ଘରେ ଥିଲେ,ଯା,ସେମିତି ଭୁଲାର ପିଛ ଯା ।
ଅଭ—ନାଁ ।
ବଜପ୍ପା—ଯା । (ଅନନ୍ତ ବାବୁଙ୍କୁ) ସୁନ୍ଦର ନାଚେ ଗାଏ ଝିଅଟି ।
ଅନନ୍ତ—ସତେ ନା ?

ବଜପ୍ପା—ଆଜ ଏଇନେ ବହୁତ ନାଚିଲ, ଆପଣ ଆଉ ଦିନେ ତା ନାଚ ଦେଖିବେ । ( ଅଭକୁ ଚାହିଁ ) ଯା । ( ଅଭ ଦୌଡ଼ି ପଳେଇଲା )

ଅନନ୍ତ—ଜସ୍ମୀ କାହିଁ କି ?

ବିଜୟା—କହି ପାରିବି ନାହିଁ , କଚେରୀରେ ଥିବେ ।

ଅନନ୍ତ—ଓଃ, ଠିକ୍ କଥା, ବିଗୁଲ ବନ୍ଧନରେ ପଡ଼ିଛୁ ସବୁ,ଆଜିକାଲି ।
ତୁମେ ସେଇଟା କଅଣ ପଢ଼ୁଛ ?

ବିଜୟା—ଆପଣଙ୍କର ଗ୍ରାମ ସଂଗଠନ ନୁହେଁ ।

ଅନନ୍ତ—(ହସି) ତା ତ ନିଶ୍ଚୟ ନୁହେଁ, ତଥାପି—

ବିଜୟା—ଉତ୍କଳର ରଙ୍ଗମଞ୍ଚ ସମ୍ବନ୍ଧରେ ଗୋଟାଏ ଆଲୋଚନା ।

ଅନନ୍ତ—ଲେଖିଛି କିଏ ?

ବିଜୟା—ନାଆଁ ଦେଲା ଭଳି ସତ୍‌ସାହସ ନ ଥିବା ଜଣେ
ଲୋକ—ନାଆଁ ଦେଇଛି 'ସୂତ୍ରଧର' ।

ଅନନ୍ତ—ତା'ପରେ, ଆଲୋଚନାଟି କେମିତି ହୋଇଛି ?

ବିଜୟା—ବାଜେ, ଗୁଡ଼ାଏ ଅନଧିକାର ଚର୍ଚ୍ଚା କରିଛି । ମୋର ତ
ଲେଖାଟା ପଢ଼ି ମନେ ହେଲା, ଭଦ୍ରଲୋକ ବିଗୁଲ ନାଟକ,
ସଙ୍ଗୀତ—ମାନେ ମୋଟ ଉପରେ କଳା ସମ୍ବନ୍ଧରେ ଗୋଟାଏ
"ଗୋଲୁ"—ଏକ ରୁକ୍ଷ ଜାନୁଆର ।

ଅନନ୍ତ—କେମିତି ?

ବିଜୟା—ଷ୍ଟେଜ୍‌ରେ ତାଙ୍କର କେବଳ ପ୍ରୋପାଗଣ୍ଡା ଲେଖା ଗୁଡ଼ିକ;
କିନ୍ତୁ, ସମସ୍ତେ ଏଇଆ ଗୁହାନ୍ତି ତ ? (ବହିଟା ବନ୍ଦକରି ଟେବୁଲ
ଉପରେ କଗୁଡ଼ି) ଗୁଡ଼ନ୍ତୁ, ଆପଣଙ୍କର ଯୋଗ୍ୟତାଟା ଶୁଣିପାରେ ।
କଅଣ କରୁଥିଲେ ଏ କେଇ ଦିନ ମଫସଲରେ ?

ଅନନ୍ତ — ମଫସଲଆମାନେ ଯାହା କରନ୍ତି ।

ବିଜୟ୍ରା — ମାନେ ?

ଅନନ୍ତ — (ହସି) ଏଇ ବଳ ବଗ୍ଣ, କାଦୁଅ ଚକଟା, ଧାନକଟା···
ଏଇସବୁ ।

ବିଜୟ୍ରା—ତା ତ ନିଶ୍ଚୟ କରୁଥିବେ, ତା ଛଡ଼ା —

ଅନନ୍ତ ତା ଛଡ଼ା ଆଉ କଅଣ ? ମଫସଲରେ ତ ଆଉ ସିନେମା, ଥିଏଟର ନାହିଁ, ମଉଜ ମଜଲସ୍ ନାହିଁ — ଗାଁ ଗଣ୍ଡା, ଚଷା ଭୂଷା, ଧାନ ଗୁଉଳ, ମୂଗ ବିରି, ଏଇ କଥା ।

ବିଜୟ୍ରା — ନାଁ ନାଁ, ମୁଁ ପଚ୍ଚରୁଛି, ଆପଣଙ୍କର ଗ୍ରାମ ସଂଗଠନ କେତେଦୂର ଅଗେଇଲା ?

ଅନନ୍ତ — ସେ ତା'ର ଚାଲିଛି ଧୀରେ ସୁସ୍ଥେ । ପ୍ରଜାଏ କରିବେ ବା କଅଣ ? ହାତରେ ତ ପାଣି ନାହିଁ, ଘରଆଡ଼େ ଦୁର୍ଭିକ୍ଷ, ହା' ଅନ୍ନର ଚିତ୍କାର । ଖଜଣା ଦେଇ ପାରୁ ନାହାନ୍ତି—ଗାଁ'ର ଉନ୍ନତି କଅଣ କରିବେ ?

ବିଜୟ୍ର —ଅରେ, ତା ହେଲେ ଆପଣଙ୍କ ପରି ଯୋଗଜନ୍ମା କର୍ମୀ ସେଠିକି ଯାଇ ଗାଁଟାକୁ ଗୃହ ଅଙ୍ଗନ ହେଲେ ଉପରକୁ ଟେକି ଦେଇ ପାରିଲେ ନାହିଁ—ହାୟ, ହାୟ !

ଅନନ୍ତ — ହଁ, ତମେ କାହିଁକି ବୁଝିବ ବିଜୟ୍ରା, ଆଉ କେମିତି ବା ବୁଝିବ ? ସେମାନେ ଯେ କଂଗାଳ । ଖାଆନ୍ତୁ ନ ଖାଆନ୍ତୁ, ମରନ୍ତୁ ସରନ୍ତୁ, ଆମ ଦେଶର ପ୍ରଜା — ଧର୍ମ୍ମଭୀରୁ । ଆଜି ବି ପ୍ରଜା ବୁଝନ୍ତି, "ମହନ୍ତ ଦେବତା ହେୟିଷା ନରରୂପେଣ ତିଷ୍ଠନ୍ତି ।"

ବିଜୟ୍ୱା—(ହସି) ଓଃ, ସଂସ୍କୃତ ! —Dead language, (ଡେଡ଼୍ ଲାଂଗୁଏଜ୍ ) ଯାଙ୍କ ସଙ୍ଗରେ ବି ଆପଣଙ୍କର କେବେ ଆଳାପ ପରିଚୟ ହୋଇଗଲାଣି ? ବାଃ, ସୁ-ଖବର ! ଅର୍ଥଟା କଅଣ ଶୁଣେ ?

ଅନନ୍ତ—ମାନେ, ରାଜା ନର ରୂପରେ ଦେବତା, ଏଇ ଧାରଣାରେ ଆମ ଦେଶର ପ୍ରଜା କରେ ରାଜାର ପୂଜା—

ବିଜୟ୍ୱା—ଏବଂ କରିବା ଉଚିତ ବୋଲି—

ଅନନ୍ତ—ଆଉ ନିଜେ ଖାଇବା ବେଳକୁ ଖାଏ କଅଣ ଜାଣ ? ମାଣ୍ଡିଆ ଜାଉ, କଳମ ଶାଗ—ତା ବି ଅଧାପେଟ, ଆଉ ରାଜାର ଭୋଗ ଲଗାଏ—ପଲଉ, ମାଂସ ।

ବିଜୟ୍ୱା—ଭାଗ୍ୟ ! ଯାହାକୁ ଯେମିତି ଭଗବାନଙ୍କର ବରାଦ ! Rich and poor (ରିଚ୍ ଆଣ୍ଡ ପୁଅର୍ ) ଏ ଦୁଇ କଥା ତ ଫେର୍ ଦୁନିଆଁରେ ଚଳୁଛି, ଆଉ ଚଳିବ ?

ଅନନ୍ତ—କିନ୍ତୁ ଭଗବାନ୍ ତ ବଡ଼ଟା ନୁହଁ ରକ୍ତ ମାଂସ ତ ଦୁଇପ୍ରକାର ନୁହେଁ ? ଗରିବ ତ ଫେର୍ ବଡ଼ ଲୋକ ହୁଏ—ଚକ ଘୂରେ ।

ବିଜୟ୍ୱା—କିନ୍ତୁ

ଅନନ୍ତ—କିନ୍ତୁ କିଛି ନୁହେଁ ବିଜୟ୍ୱା ! ଧୂରେଇ ପାରିଲେ ହେଲା । ଯାଅ, ଗରିବ ତୁମେ ଦେଖିନା—ଗରିବର ମନ ତୁମେ ଚିହ୍ନିନା; ଦେଖିଲେ ଜାଣିବ ଭଗବାନ୍ ସେଇଠି ଜାଗ୍ରତ !

ବିଜୟ୍ୱା—( ହସି ) ସୁସମ୍ବାଦ ! ତା ହେଲେ ତ ରୋଜ୍ ଆପଣ ଭଗବାନ୍‌ଙ୍କ ସଙ୍ଗେ Table talk ( ଟେବୁଲ୍ ଟକ୍ ) କରି ପାରୁଥିବେ, ମଫସଲର ସେଇ ଭଙ୍ଗା କୁଡ଼ିଆ ଭିତରେ !

ଅନନ୍ତ—ଥରେ ଯାଇ ନିଜେ ଦେଖ, ଭଗବାନ୍ କିପରି ସେଠି ମାଣ୍ଡିଆ ଜାଉ, କଳମଶାଗ ଖାଆନ୍ତି ।

ବଜପ୍ସା— ନଷ୍ଟସ୍ପ, ନଷ୍ଟସ୍ପ, ବାପାଙ୍କୁ କହ ଆଜ ଗାଡ଼ିଟା ପାଇଁ Permission (ପର୍‌ମିଶନ) ନେବ । କେତେବେଳେ ଗଲେ ତାଙ୍କ ଦେଖା ହେବ ଭଲ ?...ଓ, I am sorry (ଆଇ ଆମ୍ ସରି)—କହିଲେ ପର୍ବ ସେ ସବୁବେଳେ ଜାଗ୍ରତ !

ଅନନ୍ତ—କିନ୍ତୁ ମୋଟରରେ ଗଲେ ତ ହବ ନାହିଁ ।

ବଜପ୍ସା—ଓ, ଭସ୍ତୁ କଟିବେ ପର୍ବ ସେ ? ହଁ ହଁ, ଜଙ୍ଗଲୀ ନା ! ଯାଆନ୍ତୁ ଯାଆନ୍ତୁ, ଆପଣଙ୍କର ଏ ଆବିଷ୍କାରଟା ଭାଇଙ୍କ ଆଗେ କହି-ଦେବେ । ହୁଏତ ସେ ବ ଯିବାକୁ—

ଅନନ୍ତ—ଖୋଜନ୍ତି ତ ତାକୁ, ଶୁଣିଲି ତା'ର ବାହାଘର ସବୁ ଠିକ୍ ଠାକ୍ ହେଉଛି ।

ବଜପ୍ସା—ହଁ, କିନ୍ତୁ ତା ପକ୍ଷରୁ ଏ ଭଗବାନଙ୍କ ଦର୍ଶନଟା ଅନ୍ତତଃ ମୁଁ ପସନ୍ଦ କରି ପାରୁ ନାହିଁ ।

ଅନନ୍ତ—କାରଣ ?

ବଜପ୍ସା—ହୁଏତ, ତାଙ୍କ ପବନ ବାଜ ଭାଇଟି ମୋର ଆପଣଙ୍କ ମତ ରୁଷ ପାଲଟି ଯାଇ ପାରନ୍ତି ।

ଅନନ୍ତ—ସେ ଭସ୍ତୁ କର ନାହିଁ । ତେବେ, ମୁଁ ଶୁଣିଲି ପ୍ରଜାମାନେ ସାନବାବୁଙ୍କର ଏ ବାହାଘର ଖବରରେ ଖୁବ୍ ଖୁସି ।

ବଜପ୍ସା—ହବାର କଥା – ଜମିଦାର ଘର, ଧୂମ୍‌ଧାମ୍—କେତେ କଥା !

ଅନନ୍ତ—ଆଉ, ଏଇସବୁ ଧୂମ୍‌ଧାମ୍ କେତେ କଥା ହେବ ପ୍ରଜାଙ୍କ ରକ୍ତରେ ।

ବଜପ୍ସା—ଜମିଦାର ଘର ବାହାଘର—ଯେମିତି ହେଇ ଆସୁଛି, ଚିରଚରିତ ପ୍ରଥା ।

ଅନନ୍ତ—ଅନ୍ତତଃ, ଜଧୀର ବାହାଘରରେ ଏ ପ୍ରଥା ବଦଳିବା ଉଚିତ, ମୁଁ ଆସିଛି, ସେଇଥିପାଇଁ ।

ବଜପ୍ପା—ଭାଇଙ୍କର ସେଥିରେ ହାତ କଅଣ ? ବାପାଙ୍କୁ କୁହନ୍ତୁ; ତା ଛଡ଼ା ଜାଣନ୍ତି ତ, ବାହାଧର ପ୍ରତାପପୁର ଜମିଦାର ଘରେ— ସେମିତି ଭାବରେ ହେବା ତ ସ୍ବୃଦ୍ଧି ।

ଅନନ୍ତ—କିନ୍ତୁ ଜପ୍ପୀର ଇଚ୍ଛା ତ—

(ହଠାତ୍ ସେ ଘର ଭିତରକୁ ପଶିଆସିଲେ ଜମିଦାର)

ଜମିଦାର—ଓ, ଅନନ୍ତ, ତୁମେ ଏଠି ? ତା'ହାଲେ—ନାଃ, ଦାମା କଥାଇ ସତ, ସେ ଠିକ୍ ହରିପୁର ଯାଇଛି । ଆଚ୍ଛା, ଦାମା, ଦମା ! (ପ୍ରସ୍ଥାନ)

ଅନନ୍ତ - ବଜ !

ବଜପ୍ପା—ବଡ଼ ଅଡୁଆ ହେଲା, ଭାଇ ଯଦି ସତରେ ହରିପୁର ଯାଇଥାଆନ୍ତି······ଆପଣଙ୍କର ସାଇକଲ୍ ଅଛି ତ ?

ଅନନ୍ତ—ଅଛି !

ବଜପ୍ପା—ବାପା ଦାମାକୁ ବୋଧହୁଏ ପଠେଇଲେ ରମା ଘରେ ଖବର ନେବାକୁ । ଦାମା ଯାଇ ପହଞ୍ଚିବା ଆଗରୁ ଆପଣ କୌଣସି-ମତେ ରମା ଘରୁ ଭାଇଙ୍କୁ ଡାକି ଆଣନ୍ତୁ ।

ଅନନ୍ତ—(ବାହାରିଲେ)

ବଜପ୍ପା—ଆଉ ଗୋଟିଏ କଥା,—ରମା ଘରୁ ଯେପରି ଦାମା ସନ୍ଧାନ ନ ପାଏ ଭାଇ ଯାଇଥିବାର । ( ଦୁହେଁ ଦୁଇ ଆଡ଼କୁ ଚାଲି ଯାଇଥିବାବେଳେ, ଘରର ଟୋକା 'ବାଲିଆ' ଦୌଡ଼ ଦୌଡ଼ ଭିତରକୁ ଆସିଛି )

ବାଲିଆ—ଦେଈ, ଦେଈ, ସାନବାବୁ !

ବଜପ୍ପା—କୋଉଠି ? କାହାନ୍ତି ସେ ?

ବାଲିଆ—କଚେରି ଦୁଆରେ ।

ବଜପ୍ପା—କଚେରି ଦୁଆରେ, କାହିଁକି ?

ବାଲିଆ—ଆସି ପାରୁ ନାହାନ୍ତି ପରା !

ଅନନ୍ତ - କଅଣ ଆସି ପାରୁ ନାହାନ୍ତି ମ, କାହିଁକି ?

ବାଲିଆ—ମାଡ଼ି ବସିଛି ଘୁଣ୍ଡରେ ।

ଅନନ୍ତ—ମାଡ଼ି ବସିଛି !!

ବାଲିଆ—ହଁ, ସାଇକଲ ଭାଙ୍ଗି ଚୂନା, କଥା କହିପାରୁ ନାହାନ୍ତି,
ଶାମା ଗଉଡ଼ ପରା ଟେକି ଧରି ନେଇ ଆସିଛି !

ବିଜୟା—ଏଁ ! ଏମିତି କଅଣ ହେଲା ? ଆସନ୍ତୁ ତ ଅନନ୍ତ ବାବୁ !
[ବିଜୟ, ଅନନ୍ତ ଚାଲିଗଲେ]

---

## ଷଷ୍ଠ ଦୃଶ୍ୟ

(ଗ୍ରାମପଥ—ଦୁଇଜଣ ଯୋଗୀ ଗୀତ ଗାଇ ଭିକ ମାଗୁଥିଲେ]

ଗୀତ

କାଳ ବଇତମ ହେଲାରେ କୁମର ! ଯୋଗୀ ଥାଇ ଗଲା ଫାଟି,
ହାତ ବଢାଇଲା ଆପଣା ସୁନାକୁ, ସେ ପୁଣି ହୋଇଲା ମାଟି ।
ରାଜା ହେବେ ବୋଲି ହୁଳି ପଡ଼ିଥିଲା, ବାଜୁଥିଲା ଭୂଆଣ ଆନ,
କିଏ ଜାଣିଥିଲା ଚଉଦ ବରଷ ରାମ ପୁଣି ଯିବେ ବନ ?
ରାମ ଲକ୍ଷଣ ସୀତାୟା ଚଳିଲେ ପିନ୍ଧି ଜଟା ବଳକଳ
ରାଜପୁଅ ପୁଣି ବନରେ ପଶିଲେ, ଦୁଃଖେ କଟାଇଲେ କାଳ ।
ସବୁ ଦିନେ ସବୁ କଥା ରହିବ କି, କିଏ ସେ କରିବ ଠାଣି
ଆଜ ରଜା କାଲି ବାଟର ଭିକାରୀ, ରହିଛି କାହା ଗୁମାନ ?
ଅଳା ବୁଲୁଥିଲେ ଚଳ ବୁଲୁଆଳ. ପାଟର ପଡ଼ିଲେ ସନ୍ଧି
ଅଦେଖା ଦିନକୁ କୁଣଅଁ ମନ ଏଁ, କାହାର ନୁହେ ଏ ମନ୍ତ୍ରୀ ।

( ଗାଇ ଗାଇ ଚାଲିଗଲେ )

# ସପ୍ତମ ଦୃଶ୍ୟ

ଜମିଦାରଙ୍କ ଗୃହ ଅଂଶ

(ଦ୍ୱାର ବନ୍ଦ, ଚାଲ ଚଢ଼ୁଛି, ଭିତରୁ ଶୁଭୁଛି କେହି କାନ୍ଦିବା ସ୍ୱର ।
ବିଜୟା ଆସି ଗୋଟାଏ ଗୃହଥୋଇରୁ ଗୃହ ବାଛି ବଡ଼
ସଙ୍କୋଚରେ ଚାଲରେ ଗୃହଟି ଲଗାଇଲା । ସେ ଗୃହ
ଲଗାଇଲା ବେଳେ ଭିତରୁ ଡାକ ଶୁଭିଲା ।)

ରମା — (ଭିତରୁ) ଦାମା ଭାଇ ! ଗୋଡ଼ତଳେ ପଡ଼ୁଛି ତୋର,
ଛାଡ଼ ଦେ, ଛାଡ଼ ଦେ ମୋତେ ।

ବିଜୟା—(କବାଟ ଫିଟାଇ ପୃଛିଲା)

ରମା—(ଦେଖି ଚମକ ଉଠିଲା ) ତୁମେ,···ଆପଣ ?

ବିଜୟା—(ହାତ ଠାରି) ଅସ୍ତେ ଅସ୍ତେ ।

ରମା—ମତେ ଡାକଥିଲ କାହିଁକି ?

ବିଜୟା—(ଆଶ୍ଚର୍ଯ୍ୟ ହୋଇ) ମୁଁ ?

ରମା— (ଅଣ୍ଟା ଭିତରୁ କାଢ଼ି) ହଁ, ଏ ଚିଠି । (ଦେଖାଇଲା)

ବିଜୟା—ଚିଠି, ମୋର ଚିଠି ? [ନେଇ ଚିଠି ଖୋଲିଲା]

ରମା—ଚିଠି ଲେଖି ମୋତେ ଘରୁ ଡକାଇ ଆଣି—

(ନେପଥ୍ୟରୁ ଦାମା ଓ ଜମିଦାର କଥାବାର୍ତ୍ତା ହୋଇ
ଆସୁଥିଲେ ସେଇ ଘରକୁ)

ଦାମା—(ଅନ୍ତରାଳରୁ କହୁଛି) ନାଁ, ସେ କିଛି ଜାଣନ୍ତି ନାହିଁ ।

ବିଜୟା—[ରମା ସହିତ ଭିତରକୁ ଯାଇ କବାଟ ଆଉଜାଇ ଦେଲା ।
ଜମିଦାର ଓ ଦାମା ସେ ଘରକୁ ଆସିଲେ]

ଜମିଦାର—କେଶ୍, ମୋ ଘରେ କିଛି ଖବର ନ ପାଏ, ଆଜି
ରାତିରେ ସେ ଚେଷ୍ଟା—

ଦାମା—ପାଣ୍ଟି ଭୁଣ୍ଡ କରବ ହଜୁର ! ଏଠିକ ସିନା ଚଠିଟାଏ ଲେଖାଇ ତାଙ୍କୁ ନେଇ ଆସିଲି, ସେ କଅଣ ସହଜେ ଗାଆଁ ଛାଡ଼ି, ଯିବ ?

ଜମିଦାର – ଦେଖ୍, ଚେଷ୍ଟାକର । ସମସ୍ତେ ଶୋଇ ସାରିଲେ, ନାଇଁ ଲ ଜବରଦସ୍ତ ତାଙ୍କୁ ନେଇ ମଫସଲର କଚେରୀ ଘରେ ଅଟକ କର—ଖାଲି ସାନବାବୁର ବାହା ଘରଟା ସରିବା ତକ୍ । (ଗୁମାସ୍ତା ଆସି ପ୍ରଣାମ କଲା )

ଗୁମାସ୍ତା—ଆସିଗଲେଣି ସବୁ ।

ଜମିଦାର—କଏ ?

ଗୁମାସ୍ତା—ଆସିଗଲେ ପ୍ରତାପପୁରରୁ ସେମାନେ !

ଜମିଦାର—ବସାଇଛ ତାଙ୍କୁ ସବୁ ? ପାନ, ସିଗାରେଟ୍ ପଠାଇଦିଅ । କନ୍ୟାର କୋଷ୍ଠୀଟା ଆଣିଛନ୍ତି ତ ?

ଗୁମାସ୍ତା—ଆଜ୍ଞା, ତା ଆଉ ଆଣି ନ ଥିବେ ନାଁ ?

ଜମିଦାର—ସେ ଖବରଟା ଠିକ୍ କରି ନେଇ ପାରିଲ ନାହିଁ ତୁମେ ନାଁ ? କୋଷ୍ଠୀ ନ ଆଣି ଆସିଥିବେ କଅଣ ମୁହଁ ଦେଖାଇବାକୁ ମନେକର ? ଯା, ବୁଝ, ନାଇଁ ତ ଲୋକ ପଠେଇ ଅଣେଇନିଅ । ମୁଁ ଗଲବେଳକୁ ଯେମିତି ଆସିଥାଏ ।

ଗୁମାସ୍ତା—ଆଜ୍ଞା ! ( ଚାଲିଗଲା )

ଜମିଦାର— ଦାମା !

ଦାମା—ଆଜ୍ଞା !

ଜମିଦାର—ଜଳି, କୋଉଠି ?

ଦାମା – ( ହାତ ଠାରି ଘର ଦେଖାଇଲା )

ଜମିଦାର—( ସେ ଘରକୁ ବୁଲିଁ ) ହୁଁ, ଥାଉ—( ଚାଲିଗଲେ )

ବିଜୟା ( ହାତରେ ଝଣ୍ଡେ ଶଠି ଧରିଛି, ଘରୁ ବାହାରି ଆସିଲା; ବୁଲିଲା ବୃଦ୍ଧଅଙ୍କୁ; ଦେଖିଲା କେହି ନାହାଁ, ଶଠିକୁ ଦେଖି) ହୁଁ ।

ରମା—ଦେଖ ଡାକେଇଛନ୍ତି ବୋଲି କହି ଏ ଚିଠିଖଣ୍ଡି ଦେଇ—

ଜଗୁା—ବୁଝିଲି, ସେ ପିଲାଟି ତୁମ ଗାଁଅର, ନା ?

ରମା—ହଁ ।

ଜଗୁା—ତା’ ପରେ ଏ ଘରେ ?—

ରମା—ଆସିଲାବେଳେ ବାଟରେ ମାଡ଼ ମାଡ଼ ପଡ଼ୁଥାଏ—ଯେମିତି କିଏ ଜଣେ ପଛରେ ଆସୁଚି । ଭିତର ଅଗଣାରେ ପହଞ୍ଚି ଦେଖେଁ, ଦାମା ମୋ ପଛରେ—ମୋତେ ଡାକି ମାରି ହସିଲା । ରାଗ ଲାଗିଲା ମୋତେ ତା’କୁ ଦେଖି । ପଚାରିଲି—ଦେଇ କାହାନ୍ତି ? ଏଇ ଘରେ ଅଛନ୍ତି ବୋଲି, ମୋତେ ଘର ଭିତରକୁ ବାଟ ଦେଖାଇ ଦେଇ—

ଜଗୁା—ତା’ପରେ ତାଲା ବନ୍ଦକରି—

ରମା ହଁ ।

ଜଗୁା—(ଭୂତ, ଟିକକ ପଟେ) ଆଚ୍ଛା, ଦାମା ଆଗେ—ପୂର୍ବ ଆଗେ—ତମ ସାଙ୍ଗେ କେବେ, ଭଲା—

ରମା—(ମୁହଁ ମାଡ଼ିର ହୋଇଗଲା, ଗୁହାଳିଲା, ଖାଲି ତାରରେ ଗୁଡ଼ି ଥରିଲା ସତେ)

ଜଗୁା—ଡର ଲାଗୁ ନାହିଁ, କହ ! (ବୃଦ୍ଧଆଡ଼କୁ ଗୁହାଁ ରମାକୁ ଭଲ କରି ଦେଖି ପିଠିରେ ହାତ ମାରି) କହ ।

ରମା—ସେ କଥା କହିବାକୁ ଖରାପ ଲାଗେ—ତାର ଇଚ୍ଛା (ଅଧା କହି ତଳକୁ ମୁହଁ ପୋତିଲା)

ଜଗୁା—(ଅଳ୍ପ ମାତ୍ରବ ରହି) ହଁ, ଜମିଦାରର ପୁତର ସେ—

ରମା—(ହାତ ଯୋଡ଼ି) ଦେଖନ୍ତୁ, ଆପଣ ଯାହା କ ହେଲେ—

ଜଗୁା—ଆହା, ଛି ଛି ! (ରମା ହାତ ଛଡ଼ାଇବାକୁ ଯାଇ ଦେଖିଲା ତାର ଚିହ୍ନା ମୁହଁ ରମାର ଆଖି ପିଠିରେ । ଚମକିଲା ପରି ତା’ର

ଅଙ୍ଗୁଠି ଧରି ପଚାରିଲା) ରମା ! ( ରମାର ମୁହଁକୁ ଚାହିଁ ରହିଲା )

ରମା — (ଥରବାମରି ହୋଇ ଗୋଡ଼ତଳେ ଚଢ଼ି ଯାଉଥିଲା )

ବିଜୟା — (ଉଠାଇ ଧରି, କୋଳକୁ ଆଉଜାଇ ନେଇ ) ରମା ! ଭାଇଙ୍କର ଏ ମୁଦି, ଆଉ ତା ସଙ୍ଗେ ( ବେକରୁ ହାର କାଢ଼ି ରମାକୁ ପିନ୍ଧାଇ ) ଆଜିଠୁଁ ଏ ମୋର ରହିଲା । ରମା ତମକୁ ଏତେବେଳେ ଆଣିଚ, ବେଶ୍ କରିଚ । ଭାଇଙ୍କ ଅସୁସ୍ଥ ହେଲେ —

ରମା — କିଅଣ ହେଇଚି ତାଙ୍କର ? (ଉତ୍କଣ୍ଠାରେ ଚାହିଁଲା )

ବିଜୟା — କିଛି ଜାଣି ନାହଁ, ନାଁ ? ପରଅଦିନ ସଞ୍ଜବେଳେ ସାଇକଲ୍ ନେଇ ବାହାରି ଥିଲେ; ଫେରିଲାବେଳେ ଅନ୍ଧାରରେ ଗୋଟେ କରଡ଼ା ଖାଇ, ଟିକେ ବେଶି ରକମର —

ରମା — ମୁଁ ଟିକେ ଦେଖିବି —

ବିଜୟା — ଓ, ଦେଖିବ, ତାଙ୍କୁ ? ଆଉ ତୁମକୁ ବି ଦେଖିଲେ ବୋଧହୁଏ —

(କୋଳେଇନେଇ କାନରେ ମନ୍ତ୍ର ରଖିଲା )

ଅନନ୍ତ — (ଅନ୍ତରାଳରୁ ଡାକିଲା) ବିଜ ! (ବିଜୟା ଚମକିପଡ଼ି ରମାକୁ ଘର ଭିତରେ ଚଞ୍ଚଳ ଭର୍ତ୍ତି କରି କବାଟ ଆଉଜାଇ ଆସିଚି )

ଅନନ୍ତ — (ପ୍ରବେଶ କରି ] ବିଜୟା !

ବିଜୟା — ଓ, ଅନନ୍ତ ବାବୁ, ଆପଣ ! ଭାଇ ସେ ଘରେ ଅଛନ୍ତି —

[ ଅନ୍ୟ ଘରକୁ ଦେଖାଇ ଦେଲା ]

ଅନନ୍ତ — [ଯାଉ ଯାଉ ଫେରି ] ତମେ ଏଠି —

ବିଜୟା — ଯାଆନ୍ତୁ, ଭାଇ ଖୋଜୁଥିଲେ —

ଅନନ୍ତ—ମୋତେ ? ମୋତେ ଖୋଜୁଥିଲ ?
ଜୟନ୍ତୀ—(କବାଟ ପଛଆଡ଼ୁ ଆଉଜାଇ ଦେଉଁ ଦେଉଁ) ହଁ ।
(ଅନନ୍ତ ଚାଲିଗଲା, ତାଙ୍କ ଯିବାପଥ ଚାହିଁ) ଉହୋ ! (କବାଟ ଫିଟାଇ ପୁଣି ତମାକୁ ବାହାରକୁ ଆଣିଲା)

---

## ଅଷ୍ଟମ ଦୃଶ୍ୟ

କକ୍ଷ

[ଅନନ୍ତ ଘର ଭିତରକୁ ଆସି ଦେଖିଲା, କେହି ନାହିଁ । ଖଣ୍ଡେ କାଗଜ ଟେବୁଲ ଉପରୁ ଆଣି ପଢ଼ୁଛି—ଶୁଖିଲା ମୁହଁରେ ପଶି ଆସିଲା ସେ ଘରକୁ ଜୟନ୍ତୀ । ଅନନ୍ତକୁ ଦେଖି ]

ଜୟନ୍ତୀ—କରେ, ହଠାତ୍ ଏତେ ଖୁସିରେ ?

ଅନନ୍ତ—ତୋତେ congratulate (କଂଗ୍ରାଚୁଲେଟ୍) କରିବାକୁ ମଫସଲରୁ ଚାଲି ଆସିଲି ।

ଜୟନ୍ତୀ—ମାନେ ?

ଅନନ୍ତ—ନଷ୍ଟପୁ, କଂଗ୍ରାଚୁଲେଟ୍ କରିବାଟା ଉଚିତ ନୁହେଁ ? ଏତେ-ବଡ଼ ସୁଖବର—ତୋର ବାହାଘର, ତା ପୁଣି ମସ୍ତବଡ଼ ଜମିଦାର ଘରେ; ଇଲାକା ତମାମ୍ ହୁରି ପଡ଼ିଛି—ଗୁଡ଼ା ବାଜା, ଢୋଲ ବାଜା । ପ୍ରଜାଏ ସ୍ୱେଚ୍ଛା ଶୋଷରେ ମରି ବି ଏ ଆନନ୍ଦରେ ସହଯୋଗ କରିବାକୁ ବାଧ୍ୟ । ଆଜି ଏତେ ଆନନ୍ଦ ଭିତରେ ମୋର ବାଲ୍ୟବନ୍ଧୁର ବାହାଘର ହେବ,—ମୁଁ କଂଗ୍ରାଚୁଲେଟ୍ କରିବି ନାହିଁ—ଏ କେମିତି କଥା ?

ଜପ୍ସୀ—ଅନନ୍ତ; ଲୋକଙ୍କ ପ୍ରଜାଏ ଯେମିତି ବାଧ୍ୟ ହୋଇ ଆନନ୍ଦ ହେଉଛନ୍ତି, ତୁ ବୋଧହୁଏ ସେମିତି ଖୁବ୍ ଆନନ୍ଦ ହେବୁ, ଯଦି ଏ ବାହାଘରଟା ହୁଏ !

ଅନନ୍ତ—ସେ ଯାହାହେଉ, ଗୋଟେ ସୁଖବର ଶ !

( ବିଜୟ୍ବା ରମା ପଛପଟ ଝରକା ଖୋଲି ଚାହିଁଲା)

ଜପ୍ସୀ—ସୁଖବର ?

ଅନନ୍ତ—ନୁହେଁ ? ଜମିଦାର ପୁଅର ବାହାଘର ହେବ— ଜମିଦାର ଝିଅ ସଙ୍ଗେ—ନାଚ, ତାମସା, ବାଜା, ଶୋଷଣୀ ଟି ପାର୍ଟି ( Tea Party ), ଶାଢ଼ୀ, ଗହଣା, କେତେ କଥା !—ଆଡ଼ମ୍ବରର ସୀମା ନାହିଁ, ଖବରର ଶାପ ମାପ ନାହିଁ—ଆଉ ଏ ଖରଚ ଯୋଗାଇବେ ହଜାର ହଜାର ଅନାହାର ପ୍ରଜା । ନରକଙ୍କାଳରେ ଜଳିବ ଶୋଷଣୀ । ଲକ୍ଷ ଆଖିର ଲୁହ ହେବ ପ୍ରଦୀପର ଆଧାର—ହଜାର ଉପବାସୀ ଶିଶୁ ମାନଙ୍କର ମୁହଁରୁ ଆଧାର କାଢ଼ିନେଇ, ମାଆ ତାର ଦେବ ଜମିଦାର ବାହାଘର ଭୋଜର ଶ୍ରଦ୍ଧା । ଏ କଅଣ କମ ଆନନ୍ଦ ଜପ୍ସୀ ?

ଜପ୍ସୀ—(ହଠାତ୍ ଉଠି, ଅନନ୍ତର ମୁହଁରେ ହାତ ଦେଇ)ବନ୍ଦକର, ଅନନ୍ତ !

ଅନନ୍ତ—[ହାତ ଛଡ଼ାଇ] ଏଁ, ମୁହଁ ବନ୍ଦକରିବାକୁ ଚେଷ୍ଟା କରନା

ଜପ୍ସୀ—କୋଟିଏ ମୁହଁ ଗୋଟିଏ ହାତରେ ବନ୍ଦ ହୋଇ ପାରେ ନା । (ଉଠି) ଯାଉଛି ମୁଁ, ଖାଲି ଏ ସୁଖବରଟା ଶୁଣି ତୋତେ କଙ୍ଗ୍ରାଚୁଲେଟ୍ କରିବାକୁ ଆସିଥିଲି ।

ଜପ୍ସୀ—(ଅନନ୍ତକୁ ବସାଇ ଲୁହଭରା ଆଖିରେ ) ଅନନ୍ତ, ବିଶ୍ବାସ କରୁନୁ ମୋତେ ? ବାହାଘରର ଆୟୋଜନ ହଉଛି,

ଜମିଦାର କରୁଛନ୍ତି—ଜମିଦାର ଘରେ ? ମନୁଷ୍ୟର ମନ
ଝିଅର ବାହା ହୋଇପାରେ ନା । ଜମିଦାର ଘର, ଏ
ବାହାଘରରେ ବାଜା, ରୋଷଣୀ, ଧୂମ୍-ଧାମ୍, ଆନନ୍ଦ; କିନ୍ତୁ
ତୁ ତ ଜାଣୁ ଯାଉ ବାହାଘରରେ congratulation
(କଂଗ୍ରାଚୁଲେସନ୍) ଜଣାଇବାକୁ ଆସିଚୁ, ତାର ବାହାଘର
ସଭିତ — ଅନେକ ଝିଅନୁ । ସେ ବାହାଘରର ସାକ୍ଷୀ — କେବଳ
ବୁଢେଷ୍ଟି ଆଖିର ଲୁହ—ଏତେ ବେଗେ ତୁ ଭୁଲି ଯାଉଛୁ ?

ଅନନ୍ତ—ଜୟଶ୍ରୀ, ମୁଁ ଗଣିବ; ପାସୋରା ମନଟା ବଡଲୋକର ସାଥୀ,
ତା ନ ହେଲେ ଆଜି ଏ ସୁସମ୍ବାଦଟା—

ବିଜୟା—( ହଠାତ୍ ଭିତରପାଖୁ ବୁଲିଆସି ) ଅନନ୍ତ ବାବୁଙ୍କ
ପ୍ରସ୍ତାବକୁ ମୁଁ ଅନୁମୋଦନ କରୁଚି ।

ଅନନ୍ତ—ବିଜୟା ! ( ଗୃହିଁ ଉତ୍ତଲା ଆଶ୍ଚର୍ଯ୍ୟହୋଇ )

ବିଜୟା—ହଁ, ଅନନ୍ତବାବୁ, ଆପଣଙ୍କ କଥାକୁ ଜଣେ ତ ଫେର୍
ଅନୁମୋଦକ ଦରକାର ? ଧରନ୍ତୁ, ମୁଁ ସେହି ସ୍ଥାନ ପୂରଣ
କଲି । [ଚୌକିରେ ବସିଲା )

ଜୟଶ୍ରୀ—ଭଜ, ବାପାଙ୍କୁ କହ ଏ ଖବାହ ହେଇ ପାରିବ ନାହିଁ ।

(ଝରକା ପାଖରୁ ରମା ଚାଲିଗଲା)

ବିଜୟା—ହେଇ ପାରିବ ନାହିଁ ?

ଜୟଶ୍ରୀ—ନାହିଁ, ମୋତେ କେହି କିଛି ପଚାରିଣ ନାହିଁ ?

ବିଜୟା—ସେଇଟା ବାପାଙ୍କ ଇଚ୍ଛା, ସେ ତ ଜାଣି ନ ଥିଲେ ଯେ ସେ
ଏମିତି ଅବାଧ ସନ୍ତାନର ପିତା ବୋଲି ?

ଜୟଶ୍ରୀ—ହଁ, ସେ ଜମିଦାର, ସମସ୍ତେ ତାଙ୍କର ବାଧ୍ୟ—ଘରୁବାହାର
ପର୍ଯ୍ୟନ୍ତ, ଏମିତିକି ରାଜ୍ୟର ପଶୁ ପକ୍ଷୀ ପର୍ଯ୍ୟନ୍ତ ତାଙ୍କର ବାଧ୍ୟ
ବୋଲି ସେ ଧାରଣା କରନ୍ତି ।

ବଜୟା—ଠିକ୍ ତ କହୁଛ ।

ଜୟୀ—କିନ୍ତୁ ତାଙ୍କର ଏ ଧାରଣା ମୁଁ ବଦଳାଇ ଦେବ ।

ବଜୟା—କଅଣ, ବାପାଙ୍କର ଅବାଧ ହୋଇ ?

ଜୟୀ—ବାପାଙ୍କର ତ ମୁଁ ଅବାଧ ନୁହେଁ; ଜମିଦାରଙ୍କର ମୁଁ ବାଧ ନୁହେଁ, ଆଜ୍ଞ ଯଦ୍ଧ ସେଥିପାଇଁ ଦରକାର ହୁଏ—

ବଜୟା—(ଗମ୍ଭୀରତାର ଛଳନା କରି) ରହ, ରହ ଭାଇ, ହିସାବଟା ଠିକଏ ଦେଖିନଏଁ—ବାପା—ଜମିଦାର, ସାନବାବୁ—ଭାଇ, [ଆଙ୍ଗୁଠି ଗଣିସାରି) ହଁ,କହବଟି ଭାଇ,କଏ କାହାର ବାଧ, କଏ କାହାର ଅବାଧ ?

ଜୟୀ— ମୋତେ ଉପରେ, ମୁଁ କହେଁ :— ତୁ ବାପାଙ୍କୁ କହ—ମୁଁ ବାହା ହେବ ନାହିଁ ।

ବଜୟା—କିନ୍ତୁ, ମୋର ଯେ ଗୋଟେ ଭାଉଜ ଲୁହ—ନହାନ୍ତ ଦର୍କାର । ତୁମେମାନେ ସମସ୍ତେ ହେଲ ମୀରସ । ଏକୁଟିଆ ମୁଁ, ନା ସିନେମା, ନା ଥିଏଟର, ନା ଗୀତ, ନା ବାଜା—କଣ୍ଠୁ (enjoy) ଏଞ୍ଜୟ୍ କର ପାରୁନାହିଁ । ଅନ୍ତତଃ,ଏଥିପାଇଁ ତ ହେଲେ ମୋର ଗୋଟେ ସାଥୀ ନହାନ୍ତ ଦରକାର (and she must be my)ଆଣ୍ଡ୍ ସି ମଷ୍ଟ ବ ମାଇଁ ଭାଉଜବୋହୂ (ହସିଲା)

ଜୟୀ—ବଜ ! (ରଗି ଯାଉଁଲା)

ବଜୟା—(ଜୟୀ ହାତ ଧରି) ତୁମେ ରଗିଲ ଭାଇ, ମୋ ଉପରେ ? ବୋଉ ମରିଗଲାବେଳେ ତୁମକୁ କଅଣ କହି ଯାଇଥିଲା, ଭୁଲିଗଲ ?

ଜପ୍ସୀ—ନାଇଁ, ନାଇଁ (ବଜକକ ଆଦର କରି), ମୋର ଭୁଲ ହୋଇଛି ବଜ ! ଆଉ ଆଉ, କେବେ ଦୁଃଖ ଦେବି ନାହିଁ ।

ବଜଗ୍ନୀ—ତେବେ ? ହଇ ବାପାଙ୍କ କଥା ନ ରହିଲେ ତାଙ୍କ ମନ ଦୁଃଖ ହେବ । ଅନନ୍ତ ବାବୁ—ଯେଉଁ ସୁଖବର ଦେଲେ, ଜବାବଟା ତୁମଠାରୁ ପାଇସାରି--ହସିବା,କାନ୍ଦିବା ସେବୁଝିଲେ । ଅଚ୍ଛା, ମୁଁ ପଢ଼ି କହେ ସୁସମ୍ବାଦ······

ଜପ୍ସୀ—[କାତର ହୋଇ ରହିଁ] ବଜ !

ବଜା—(ଟିକଏ ରହି, ହସି) ହୁଁ, ତା ପରେ—ହଁ, କଅଣ କହିବାର କହ । କହିବ, ନାଁ—ମୁଁ କହିବି ?

ଜପ୍ସ—ତୁ କଅଣ କହିବୁ ଦେଖି, କହିଲୁ ?

ବଜଗ୍ନୀ—ମୁଁ ପଢ଼ି କହେ, ବଜର ଘଇ ଆଜ ବାହା ହେବ ନାହିଁ,

ଜପ୍ସୀ—ମାନେ ?

ବଜଗ୍ନୀ—ମାନେ ? (ଝରକା ପାଟକୁ ଦୌଡ଼ିଯାଇ ସ୍କ୍ରିନ୍‌କାଢ଼ି ରହିଁ) ନ୍ୟାବୋର୍, ନ୍ୟାବୋର୍ ଅରେ ? ହୁଁ, ଫେଏର୍ ଲଜ ? ଆସ୍ଥା (ଘରୁ ଭିତରକୁ ଦୌଡ଼ି ଚାଲିଗଲା । ଅନନ୍ତ ଓ ଜପ୍ସୀ ରହିଁ ରହିଲେ) ।



# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( ଜମିଦାରଙ୍କ ଶୋଇବା ଘର )

[ ଜମିଦାର, ସ୍ୱର୍ଗୀୟ ପତ୍ନୀଙ୍କ ଫଟୋକୁ ଧୋତି ରୁମାଲରେ ଫଟୋ ପୋଛୁଥିଲେ । ରତ୍ତିକୁ ଧେନି ବଜପ୍ପାର ପ୍ରବେଶ ]

ବଜପ୍ପା—ହେଇଟି ବାପା !

ଜମିଦାର—କିଏଲୋ ମା, 'ରତ୍ତି' କିଏଲୋ ?

ବଜପ୍ପା—ଅଜା କାହାନ୍ତି ବୋଲି ମୋତେ ଆଜି ବସାଇ ଉଠାଇ ଦେଲା ନାହିଁ । ଖବର କାଗଜଟାଏ ପଢ଼ୁଥିଲି ଯେ—

ଜମିଦାର—ହଇଗୋ ! ମିସ୍ ଅନ୍ତ ବାଳା, ତମେ ନାଚ ଗୀତ ସବୁ ଶିଖିଚ ? ତମକୁ ଗୋଟାଏ ଥିଏଟରବାଲାକୁ ବିକିଦେବା ।

ରତ୍ତି—ତମେ ଚଢ଼େଇଲେ ସେମିତି, ମୁଁ ବୁଲି ଯାଉଚି ।

ଜମିଦାର—ଆଲୋ, ନାଇଁମ, ଆ, ଗାଇଲୁ ଗୋଟେ ଗୀତ ଦେଖି ।

ରତ୍ତି—ଆଉ ' ମୋତେ ଆସିବ ନାହିଁ ।

ବଜପ୍ପା—ଛି, ସେମିତି ଟୋଟାଏ କଅଣ ?

ଜମିଦାର—ତା'ହେଲେ ମୁଁ ତୋ ଅଜା ହେବି ନାହିଁ ।

ରତ୍ତି—(ବଜକୁ) କଅଣ ଗାଇବି ମାଉସୀ ?

ବଜପ୍ପା—( ଗୀତ ପଦ କହିଦେଲେ )

ରତ୍ତି—ସେଥିରେ ତ ନାଚ ଅଛି ।

ବଜପ୍ପା—ହଉ, ନାଚୁନେଇଁ ?

ଜମିଦାର—ସତେ ତ, ମୁଁ ତୋ ନାଚ ଦେଖି ନାହିଁ ।
ଭକ୍ତ—( ଉଠି ପୁଣି ବସିପଡ଼ିଲା )
ଜମିଦାର—ଦେଖ୍, ମୋ କଥା ନ ରଖିଲେ ମୁଁ ତମ ଘରକୁ ଯିବ
ନାହିଁ, କ ତୋ ଅଜା ହେବ ନାହିଁ, କ ତୋତେ କଥା
କହିବ ନାହିଁ ।
ଭକ୍ତ—ମାଉସୀ, ଘୁଙ୍ଗୁର ?
( ବଳସ୍ତ୍ରୀ ଘୁଙ୍ଗୁର ଆଣି ଭକ୍ତ ଗୋଡ଼ରେ ବାନ୍ଧି ଦେଲା )
( ଭକ୍ତ ଗୀତ ଗାଇ ନାଚିଲା )
ଜମିଦାର— (ବଳକୁ) ଦେଖ୍, ଦେଖ୍ ମା, ଭକ୍ତକୁ ଦେଖ୍—
( ଭକ୍ତ ମଝିରେ ବଡ଼ିନ ଗୁମାସ୍ତା ଆସି ଦଣ୍ଡିଶ୍ବ ବଡ଼ାଏ
କାଗଜପତ୍ର ଧରି, ଜମିଦାର ଦେଖିଲେ ତାକୁ, ଭକ୍ତର
ନାଚ ବନ୍ଦ ହୋଇଗଲା ତାକୁ ଦେଖି ]
ଜମିଦାର—[ ଅଙ୍କୁ ] କଲେ, ନାଚ ବନ୍ଦ କରିଦେଲୁ ଯେ ?
ବଳସ୍ତ୍ରୀ—ଲାଜ ମାଡ଼ିଲା ତାକୁ ନାଁ କଅଣ ?
ଜମିଦାର—ଓ, ଗୁମାସ୍ତାଙ୍କୁ ଦେଖି ? ଆଚ୍ଛା, ବେଶ୍, ବେଶ୍, ଅଭିନ
ମୋର ଖୁବ୍ ପସନ୍ଦ ହେଲା । ଆଉ ତା ବାପାଙ୍କର ଭାବନା
ନାହିଁ ବର ଖୋଜିବାକୁ ।
ଭକ୍ତ—ଉଁଃ, ଏଇ ବୁଢ଼ା ବଡଠାକୁ [ କହି ଦୌଡ଼ି ପଳାଇଲା ] ।
ବଳସ୍ତ୍ରୀ—ରହ ରହ, ପଳାଉଛୁ କୁଆଡ଼େ—ଘୁଙ୍ଗୁର ପୁଡ଼ାକ ଗୋଡ଼ରେ
ଅଛି ଲୋ । [ଉଠି ଚାଲିଲେ]
[ ଗୁମସ୍ତା ଆସି କାଗଜ ପେଶ୍ କଲା ଜମିଦାରଙ୍କ ଆଗେ ]
ଜମିଦାର—[ଦେଖି] ଗୋଟେ ଅକଲ ନାହିଁ ତମର ! ଏବେ ଯା ତମ-
ମାନଙ୍କର ଘର ବାହାଘର ଜୁଟିଛି ଯେ, ପାଞ୍ଚ ପରଶରେ କାମ
ଚଳିଯିବ ।

ଗୁମାସ୍ତା — ଆଜ୍ଞା ହଁ ।
ଜମିଦାର — କଅଣ, ଆଜ୍ଞା ହଁ ?
ଗୁମାସ୍ତା — ଆଜ୍ଞା, ସେଇକଥା କହୁଚ ପରା ?
ଜମିଦାର — କହୁଚ ତ, ଆଦାୟ କାହିଁ ? ଆମର ଏଇ ଘରେ ତ ଫେର ବାହାଘର ହୋଇଚ ? ଆମର ଗୋଟାଏ ବାହାଘର ମାନେ, ଇଲାକାର ପାଞ୍ଚ ବରଷର ଆଦାୟ ଏକା ଥରକେ ଘରକୁ ଆସିବ ।
ଗୁମାସ୍ତା — ଆଜ୍ଞା ହଁ ।
ଜମିଦାର — (ଚିଡ଼ି) ଫେରେ ସେଇ ଆଜ୍ଞା ହଁ ?
ଗୁମାସ୍ତା — ଅଜ୍ଞା ହଁ, ସେମିତି ହୁଏ ।
ଜମିଦାର — ସେମିତି ହୁଏ ତ ଜାଣ । ଆଜ ତମେ କରୁଚ କଅଣ ? ଇଲାକା ଉପରୁ ଯେବେ —
ଗୁମାସ୍ତା — (କାଗଜ ଓଲଟାଇ ତରତର କରି କହିଲା ) ଆଜ୍ଞ ସର-ପୋଖରୀ ମୌଜାରୁ ତହସିଲଦାର ପଠାଇଛନ୍ତି ଟ୧୯୬୨୫ ।
ଜମିଦାର — ସରପୋଖରୀ ମୌଜାରୁ ମୋଟେ ଏଇ ଆଦାୟ ? ବଡ଼ ମୌଜା ସେଇଟା, ହଜାର ଟଙ୍କା ନକ୍ସ ପକ୍ଷେ ହେବା ଉଚିତ । ଘରପିଛୁ କେତେ ଲେଖାଏଁ ମାଗଣ ବସିଚି ?
ଗୁମାସ୍ତା — ମୁଁ ତ କହି ପାରିବ ନାହିଁ ।
ଜମିଦାର — ସେ ଇଲାକା ତହସିଲଦାରଙ୍କୁ ତଲବ କର, କାଲି ଭିତରେ ଆସି ମୋ ସଙ୍ଗରେ ଦେଖା କରିବେ । ଯା ଏଇକ୍ଷଣି ହୁକୁମନାମା ଲେଖି ଆଣ ।
ଗୁମାସ୍ତା — ଆଜ୍ଞା ! (ଚାଲିଗଲେ)
ଜମିଦାର — [କେତେଗୁଡ଼ାଏ ଲମ୍ବା ଲମ୍ବା ତାଲିକା ଓଲଟାଉ,ଓଲଟାଉ] କିଏ ଅଛୁ ରେ ? ବିପିନ୍ !

( ନେପଥ୍ୟରୁ "ଆଜ୍ଞା" ବୋଲି କହି କାଗଜ କଲମ ଧରି ପୁଣି ଆସିଲେ ବଗିନ୍ )

ଜମିଦାର—[ କିଛିକାଳ ପରେ କାଗଜରୁ ମୁହଁ ଉଠାଇ ] ହଁ, କଲିକତା ଚିଠି ଗଲା ?

ଗୁମାସ୍ତା —କଲିକତା ?

ଜମିଦାର—ହଁ,ଟି ପାର୍ଟି [Tea party] ଲାଗି—ମନେ ନାହିଁ କି ? ମୁଁ ଜାଣେ ।

ଗୁମାସ୍ତା—ଆଜ୍ଞା ' ନାଁ ।!

ଜମିଦାର—ଆଜ୍ଞା ନାଁ, ମୁଁ ଜାଣେ ନାହିଁ ବୋଲି କହୁଚ ?

ଗୁମାସ୍ତା —ଆଜ୍ଞା ! ଚିଠିଟା ହୋଇଛି । [ପକେଟରୁ କାଢ଼ି ଦେଖାଇଲେ]

ଜମିଦାର—ଯାଅ, ପଠେଇ ଦିଅ, ସାଙ୍ଗେ ସାଙ୍ଗେ । ତିନଶ ଲୋକଙ୍କର ବରାଦ । ମନେ ରହିବ ? ନାଁ, —ଫେର୍ —

ଗୁମାସ୍ତା —[ଶୁଖିଲ ପାଟି ଯାଉ ] ଆଜ୍ଞା !—

ଜମିଦାର—ଆଉ ସେ ହୁକୁମନାମାଟା ଆଣ ବେଗେ, [ବଜପ୍ପା ଆସିଚ ]

ଜମିଦାର —'ଅଭ 'ଗଲଣି କଲେ ମା ?

ବଜପ୍ପା —ହଁ ବାପା !

ଜମିଦାର—ଆଗୁ, ତୁ ଦେଖିଲୁ, ଏଇ ନେକ୍‌ଲେଶ୍ [ necklace ] up to date—Aristrocrate fashion. ଏ ଦେଶରେ ଚଳିବ ତ ? ଆଜକାଲିର —ମାନେ —ବେଶ୍ —

ବଜପ୍ପା —କର୍ଣ୍ଣଣ ? ନୂଆବୋଉ ପାଇଁ ନାଁ ।?

ଜମିଦାର — ହଁ, ନାଇଁ ତ ତୁ ବାଛ ।

ବଜପ୍ପା —[ଗମ୍ଭୀର ଭାବେ] ଦେଖିବ ।

ଜମିଦାର — ଓ, [ହସି] ତୋର ଗୋଟେ ଏମିତି ହେବା ଦର୍କାର, ନାଁ ? ତୋ ନୂଆବୋହୂ ମାଇଁ ଗଢ଼ା ହେବ; ତୋ ପାଇଁ ହେଲ ନାହିଁ — ଜାଣିଁକ ବୋଲି —

ବିଜୟା — ନାଁ । ବାପା; ଏତେ ଛୋଟ ମନ ମୋର ନୁହେଁ । ଗହଣା ଗଢ଼ା ହେବ, Tea party[ଟି ପାର୍ଟି ]ନାଚ, ତାମସା ହେବ । ସବୁ ଆପଣ କରିବେ —

ଜମିଦାର — ତା'ତ ନିଶ୍ଚୟ । ମୋର ପୁଅ ତ ଆଉ ଦୁଇଥର ବାହା ହେଉ ନାହିଁ, ଆଜି ଯେବେ ବୋଉ ତୋର ଥାଆନ୍ତା, ବଗଦର ସୀମା ରହନ୍ତା ନାହିଁ — ଆନନ୍ଦରେ ଗୋଡ଼ ତା'ର ତଳେ ଲାଗନ୍ତା ନାହିଁ ।

(ଫଟୋ ଆଡ଼କୁ ଚାହିଁଲେ]

ବିଜୟା — ହଁ, ବୋଉ ଥିଲେ ଯେ କଅଣ ହୁଅନ୍ତ — ସେ କଥା କିଏ କହିବ ?

ଜମିଦାର — ଆନନ୍ଦ ହୁଅନ୍ତା ନାହିଁ ? ଏତେ ବଡ଼ ଜମିଦାର ଘର ସାଙ୍ଗରେ କାନ୍ଧ ବାନ୍ଧିବାକୁ ଯାଉଛି ମୁଁ — ନିଶ୍ଚୟ ବୋଉ ତୋର ଆନନ୍ଦ ହୁଅନ୍ତା ।

ବିଜୟା — ହଁ, ଘର ବଡ଼ ସତ ବାପା ! ବାକ, ମନ ବଡ଼ ହେଲେ ସିନା ? — ଆମେ ତ ଆଉ ବଡ଼ ଘର ନେଇ ସଂସାର କରିବା ନାହିଁ ?

ଜମିଦାର — (ହସି) ତୁ ଭୁଲ୍ ବୁଝିଚୁ ବିଜ ! ବଡ଼ ଘରେ ଛୋଟ ମନ ଆସିବ କେଉଁଠୁ ?

ବିଜୟା — ଏଇଟା କଅଣ ଅସମ୍ଭବ ? ଭାଇଙ୍କ ମନକୁ ଚାହିଁ ନୂଆ ବୋହୂ ଟିଏ ହେଲେ ସିନା ?

ଜମିଦାର—[ହସି] ଓଃ, ଏଇକଥା ? ସେ ସବୁ କହୁଛୁ ଭାବବାକୁ ନାହିଁ ବଜ ! ତୁ ଜାଣୁ ପ୍ରତାପପୁର ଭୂୟାଁ ଘର ଧନ, ମାନ, ସବୁଥିରେ ଆମଠୁଁ ଯଥେଷ୍ଟ ବଡ଼ । କନ୍ୟାଟି ମାଟ୍ରିକ୍ ପାଶ୍ କରିଚ, ଦେଖିବା ବି ଶୁଣିଲି ଖୁବ୍ ସୁନ୍ଦର । ପିଲାଟିକୁ ଆମ "ଅଭି"ର ବାପା ରସାନନ୍ଦ ବାବୁ ଦେଖିଛନ୍ତି, ଜାଣୁ ?

ବଜମ୍ମା—ହୋଇଥିବ, କନ୍ୟା ରସାନନ୍ଦ ବାବୁଙ୍କ ଆଖିକି ସୁନ୍ଦର ହୋଇପାରେ, ପ୍ରତାପପୁର ଜମିଦାର ଘରର ଧନ, ମାନ, ଆପଣଙ୍କ ଆଖିକୁ ଖୁବ୍ ବଡ଼ ହୋଇପାରେ—ସେ ତ ଅଲଗା କଥା ।

ଜମିଦାର—ଅଲଗା କଥା, ତୁ କଅଣ କହୁଚୁ ବଜ ? ଏଇତକରେ ତ ମୋର ଆଉ ସରିଯାଉ ନାହିଁ । ଏତିକିବେଳୁ ମୋତେ ତ ଫେର୍ ତୋ ପାଇଁ ବାଟ ଠିକ୍ କରିବାକୁ ପଡ଼ିବ ।

ବଜମ୍ମା—ସେ ତ ବହୁତ ଦୂରରେ ।

ଜମିଦାର—ଦୂରରେ ଆଉ କଅଣ ? ମୁଣ୍ଡକୁ ମୁଣ୍ଡ ପକାଇବାକୁ ହେଲେ ତ, ଫେର୍ ସେମିତି ଖରଚ ଦର୍କାର !

ବଜ—ଖର୍ଚ୍ଚରେ ତ ଗୋଟେ ସମୟ ଆଉ ସୀମା ଅଛି ବାପା ! ଦେଖିଲ—

(କାଗଜଟା ବଢ଼ାଇ ଦେଲା)

ଜମିଦାର—(ଧରି ପଢ଼ି) ଓ, ଏ ଗୋଟେ ଓଡ଼ିଆ କାଗଜ, ଯାର ଗୋଟେ ମତ······ପାଞ୍ଚଟା ଲୋକ ଏକାଠି ହେଲେ ଯେ ଲେଖେ ଗୋଟାଏ ବିରାଟ ସଭା······ଗୁଡ଼ ଗୁଡ଼—ଏଗୁଡ଼ାକ ତୁ ପଢ଼ୁ କାହିଁକି ? ମୁଁ ଏ ସବୁ କଣେ କାହିଁକି ତୁ ଜାଣୁ ? ମାନେ, ଖାଲି ସମୟ କିଲ (kill) କରିବା ପାଇଁ, ଘର ଗଣ୍ଡାକ ପାଇଁ ଥୋକେ କାଗଜବାଲା ସତକୁ ମିଛ, ମିଛକୁ

ସତ ଲୋଷ୍ଟି ଲୋକଙ୍କ ଆଖିରେ ଧୂଳି ଦେଇ ବସୁଛନ୍ତି, ଆଜି, ଲୋକେ ଏଗୁଡ଼ା ଓଲୁକର ଦେଇ କଣନ୍ତି । ଯା,ତୁ ଯା, ଏଇ କ୍ୟାଟଲଗ୍‌ଟା ନେଇ ଯା, ଭାଇକି ଦେଖାଇ ଗହଣା-ଗୁଡ଼ା ପସନ୍ଦ କରିପକା—ଦିନ ଆଉ ନାହିଁ ଯେ ! କାରିଗର ତ ଫେର ଗଢ଼ିବ—ନେ, ଯା—

ଝଜପୁ—ମୁଁ କହୁଥିଲି କଅଣ କି ଭାଇଙ୍କର ମତ ଟିକିଏ—

ଜମିଦାର—ଆରେ, ତା ମୁଁ ବୁଝିଲି, ସେଇଆ ତ ମୁଁ କହୁଚି;ମୁଁ ତ ଆଉ ପଚାରି ପାରୁନାହିଁ ତାକୁ । ତା'ର ପସନ୍ଦଟା ଅନ୍ତତଃ—

ଝଜପୁ—ମୁଁ ସେ କଥା କହୁନାହିଁ । (ଗୁମାସ୍ତା ଆସିଲା)

ଜମିଦାର—ଆଚ୍ଛା, ତୁ ଆଗେ ବୁଝିଆ । ତା'ପରେ --(ଗୁମାସ୍ତା ପ୍ରତି) ହଁ, ଆଣିଲ ?

ଗୁମାସ୍ତା—(ଟେବୁଲ୍‌ରେ ଚିଠି ଥୋଇ କଲମ ବଢ଼ାଇ ଦେଲା, ଜମିଦାର ଦସ୍ତଖତ୍ କଲେ । )

ଜମିଦାର—ଆଜି, ଏହିକ୍ଷଣି ଲୋକ ହାତେ ସାଙ୍ଗେ ସାଙ୍ଗେ ପରୱାନା ପଠାଅ । (ଝଜପୁ ଯିବା) ତୁ ଗଲୁ ନାହିଁ ମା ! ଯା ବୁଝି ଆ । [ ଗୁମାସ୍ତା ଚାଲିଯାଉଥିଲା, ତାକୁ ପୁଣି ଡାକି ] ହଁ, ଶୁଣ ଶୁଣ, ଗୋଟେ ଲୋକ ପଠେଇ ଦିଅ ଓଡ଼ିଶା ଆର୍ଟ ହାଉସ୍‌କୁ—ଜଣେ ଭଲ କାରିଗର ଦର୍କାର, ଅର୍ଡ଼ର ବୁଝି ନେଇଯିବ ।

ଗୁମାସ୍ତା—ଆଜ୍ଞା !(ପ୍ରସ୍ଥାନ ] (ଝଜ କହୁ ନ କହୁ ଚାଲିଯାଉଥିଲା) ।

ଜମିଦାର—ଆରେ,କ୍ୟାଟଲଗ୍‌ଟା ନେଇ ଗଲୁନାହିଁ !—ଚାଲିଗଲୁ ? ତୁମମାନଙ୍କର ମନମିଜ ହେ ମନ—ନେ,ନେ (ଉଠି, ହାତକୁ ବଢ଼ାଇ ଦେଲବେଳକୁ ଝଜ ଚାଲିଯାଉଥିଲା କହି କହି ।)

ଝଜପୁ—ସେଇଟାକୁ କାହା ହାତେ ଭାଇଙ୍କ ପାଖକୁ ପଠାଇ ଦେବେ ଆପଣ ।

ଜମିଦାର—(ହଠାଏ ଗୃହଁ ) ହୁଁଃ (ବିରକ୍ତ ହେବାପରି ଫେରି ଆସିଲାବେଳକୁ ଦେଖିଲେ ଦାମା ) କଅଣ ଯେ—ଏମାନେ, (ଦାମାପ୍ରତି ) କରେ, ଖବର ନେଲୁ କିଛି ?

ଦାମା—(ଶଙ୍କିତଭାବେ) ନାଁ—

ଜମିଦାର – ନାଁ—ନାଁ ମାନେ ?

ଦାମା—ଗାଆଁ ସାରା ଖୋଜିଲି ଆଜ୍ଞା ! ଦୁଆରେ ତା'ର ତାଲା ବନ୍ଦ, କୁଆଡ଼େ ଚଲ୍ଲା, କେହି କିଛି ଜାଣନ୍ତି ନାହିଁ ।

ଜମିଦାର – ତୁ ତାକୁ ଠିକ୍ ଏଠିକି ଆଣିଥିଲୁ ତ ?

ଦାମା—ଅଜ୍ଞା ହଁ, ଖାଲି ଆଣିଥିଲି ? ଆଣି, ଘରେ ଏକାବେଳେ ତାଲଦେଇ —

ଜମିଦାର—ତା'ହେଲେ ?

ଦାମା—କେଜାଣି ଯେ କୁଆଡ଼େ ଗଲା—ତାଲା ଗୁଏଁ ତାଲା ବନ୍ଦଅଛି, ଘର ଶୂନ୍ । ମୋତେ ଲାଗୁଛି ସେ କଅଣ ଜମିଆଁ ଜାଣିଛି ।

ଜମିଦାର – ଜମିଆଁ ?

ଦାମା—ଆଜ୍ଞା ହଁ, ତା ନ ହେଲେ ସାନ ବାବୁଙ୍କ ପରି ଯୋଗୀ ବାବୁ –

ଜମିଦାର—ଚୁପ୍ ! ଜମିଆଁ ଜାଣିଛି ସେ, ନାଁ ଜମିଆଁ ତୁ କରୁଚୁ ମୋ ଆଗରେ ? ଯା, ଦେଖ୍ ତାକୁ, ଖୋଜିକରି ଆଜି ମୋତେ ଖବର କର । —କହିଲା :– ଆଣି ଘରେ ତାଲା ବନ୍ଦ କରି ରଖିଥିଲି ! ଆଜି ସେ କଅଣ ବନ୍ଦ ଘରୁ ଉଡିଗଲା ? ଯା, କୋଉଠି ତାକୁ ରଖିଚୁ, ମୋତେ କହିବାକୁ ହବ ତତେ ।

ଦାମା – ଆଜ୍ଞା, ମୁଁ –

ଜମିଦାର — ଚୁପ୍ ରହ ବଦମାସ୍ ! ଖେଳୁଛୁ ମୋ ସାଙ୍ଗେ ? ନାଁ ? ଯା ହେଇଚ, ସବୁ ତୋ'ର ସଲ୍ଲାରେ ହେଇଚ । ଯା, ଜଲ୍ଦି ଖବର ଆଣ, ସେ କୋଉଠି ଅଛୁ ।

ଦାମା—ହଜୁର ମାଆ ବାପା — ମୁଁ ଜମା ଜାଣିନାଇଁ; ମୋତେ ଯୋଉ ନସୁମ ଦେବେ —

ଜମିଦାର— ଚୁପ୍ ଚୁପ୍, ହଲପି—ବଦମାସ୍ ? ଯା କହୁଚ । ଆଜ ମୋତେ ଖବର ଦେ, ସେ କୋଉଠି, ନାଇଁ ତ ଏ ଦୁଆରେ ଦାନା ନାଇଁ ତୋର ।

ଦାମା—ଅଜ୍ଞା ! ( ଭୟରେ ଥରଲା )

ଜମିଦାର—କିଛୁ ମୁଁ ଶୁଣିବାକୁ ଚାହେ ନାହିଁ, ଯା,(ଦାମା ଚାଲିଗଲା) ( ଗୋଟିଏ ବନ୍ଦ ଚିଠି ଆଣି ଗୁମାସ୍ତା ଆସି ଚିଠି ବଢ଼ାଇ ଠିଆହେଲା )

ଜମିଦାର—(ବିରକ୍ତ ହୋଇ) କଅଣ ? ସେ କଅଣ ? ତୁମର ଫେର୍ କଅଣ ?

ଗୁମାସ୍ତା — ଆଜ୍ଞା, ଏଇଟା —

ଜମିଦାର—ହିଁ ? କଅଣ ସେଇଟା ?

ଗୁମାସ୍ତା—ଚିଠିଟାଏ କଅଣ ଲଚ୍ଛମନଆ ପିଆଦା ନେଇ କରି ଆସିଛି, ହରିପୁର ତହସିଲଦାର ପଠାଇଛନ୍ତି — ଜରୁରି ଚିଠି ।

ଜମିଦାର—ଟଙ୍କା କେତେ ଆଣିଚ ?

ଗୁମାସ୍ତା—ନାଇଁ ତ —

ଜମିଦାର—ଆଉ କଅଣ, ଖାଲି ଚିଠିଟା ? କଅଣ ଲେଖିଚ,ଦେଖି ? (ଚିଠି ଚିରୁ ଚିରୁ) କାମ ତ ଆଉ କିଛି ନାହିଁ, ତହସିଲଦାର ଚାକର ପାଇ, ଲୋକା ଉପରକୁ ଗଲେ ତ ବାପର କୁଳ ଯ

ଭୁଲିଗଲେ । (ଶଠି ଚଡ଼ି) ଓଁ ! revolution ?-ମେଳ ? ଅଚ୍ଛା, କଏ ଏ ଶଠି ଆଣିଚ, କାହିଁ ସେ ଲୋକ ? ( ଉଠି ଖୁବ୍ ଶୀଘ୍ର ଚାଲିଗଲେ )

ଗୁମାସ୍ତା—(ଡାଟକା ହୋଇ) ପ୍ରେଫେ'ର୍ କ ଦାଉରେ ବାପା !

---

## ଦ୍ୱିତୀୟ ଦୃଶ୍ୟ

( ସରଗୋଛଣ୍ଡ ଗ୍ରାମପଥ )

[ ଖୋଲ କରତାଳ ନେଇ ସ୍ୱାମୀଜୀ । କେତେ ଜଣ ନାଗରିକମାନେ— ବାଳକ ବାଳିକା ଓ ଗ୍ରାମବାସୀ ସେବା ସଦନ ଲାଗି ମୁଷ୍ଟିଭିକ୍ଷା ସଂଗ୍ରହ କରୁଛନ୍ତି । ସେମାନେ ଗାଉଛନ୍ତି, ସମ୍ମିଳିତ ସଙ୍ଗୀତ ।]

### ଗୀତ

ମରଣର ଶତା ମନ୍ଥନ କରି, ଅକାଳ ମଡ଼କ ଉଠିରେ ଚେଇଁ,
ହାଡ଼ ଚମ ଯେନ କଙ୍କାଳ ଆସ, ମତ କି ଉଚ୍ଚୁର ଜଳିବାପାଇଁ ? ।।ଘୋ।।
କଏ କହେ ତୁମେ ଢ଼ିକାଗ୍ର ବୋଲି ରେ,
ଯାଯାବର ବୋଲି କହୁଛି କଏ ?
ରଜା, ସାଉକାର ତୁମେ ତ ଗଢ଼ିଛ, ଦଣ୍ଡା ତୋଳି ଆଜ ବସିଛି ସିଏ,
ତୁମ କରଣୀରେ— ସ୍ମରଣ ମନରେ,
ଏଇ ଘଟଣା ମନେ କି ନାହିଁ ? । ୧ ।
ମାଟି ମେଣ୍ଟ ଶତ, ତୁମେ ତ କାଟିଛ, ମାଆର ପେଟରୁ ମାଣିକ, ହୀରା
ତୁମେ ଭୋକେ ମର, ଭାତ ମୁଠାକର ଆଶା ନାହିଁ,ପିଠି ପିନ୍ଧୁଛ ଚିରା,
ସେଇ ହାତଗୋଡ଼ ଅଛି ତ ତୁମର,
ଜନମ ତୁମର ଖଟିବା ପାଇଁ । ୨ ।

ଚକ ଦୂରେ ଯିବ, ଚଡ଼ାଳ ପଡ଼ିବ, ଅନ୍ଧାର ହେବ ରେ ଅଲୁଅ ଘର,
ହେମ ସିଂହାସନ ଥିବ ଉଠିବରେ, ତୁମେ ଯେବେ ଥରେ ଦେବ ହୁଙ୍କାର
ଦୁନିଆ ଅଖିରେ ଆଙ୍ଗୁଠି ହଲଇ
ବଜ୍ର କଏ — ତୁମେ ଦେବ ଦେଖାଇ । ୩ ।

ଚମକ ଚଢ଼ିନା ବାଟୋଇରେ ଦେଖି, ମନ୍ତ୍ରୀ ଜଗୁଆ ଏଇ ନଅର,
ଜଗି ସେ ରହିଛୁ ଠିଆ ଝଟିଆ, ଯେତେକ ଚୋରର ଉକଚ ଝାଳ,
ଚୋ ଲହ ଚୋଟିକ ଦୁଧ ଖିଁଚକଟ, ବୋଇ ହୁକୁମର ଅଛୁ ଚୁମାଇ ।୪।
ହିଡ଼ ବାଡ଼ ନାହିଁ, ଅଖି ପାଉ ନାହିଁ, ସାଉକାର ଘର ଏଇ କଅଣ,
ଶୁଧ ଭଣ୍ଡାରକୁ ହାଲା ହେଲ ପଗ, ନିଶାଇ ଗାଅଁର ଯେତେ ଚୋକଣ,
ଗାଲେ ହାତ ଦେଇ, ଜଳକା ସମାନ,
କେତେ କାଳ ଅଉ ଥିବୁରେ ବୁହିଁ ? । ୫ ।

( ଜମିଦାରଙ୍କ ସରଦୋଷୋ ତହସିଲଦାର ଆସି ଠିଆ ହୋଇ ଦେଖିଲେ, ତା'ପରେ କହିଲେ )

ତହସିଲଦାର — ବନ୍ଦ କର । ଏ ସବୁ ଗୋଳମାଳ, ବନ୍ଦ କର ।

( କେହି ଶୁଣିଲେ ନାହିଁ )

ତହ — ଅରେ, କହୁଚପଗ, ଏ ସବୁ ବନ୍ଦକର ବୋଲି — ଶୁଭୁନାହିଁ ?

ପ୍ରଥମ — ସେବାସଦନ ଲଗି ଭିକ୍ଷାମାଗି ବୁଲୁଛୁ । ଗୋଳମାଳ ତ କରୁ କରୁନାହୁଁ, ବନ୍ଦ କରିବୁ କଅଣ ?

( ଭଜନ ପଧାନ ଆସି ସ୍ୱାମୀଜୀଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି ପାଞ୍ଚଟି ଟଙ୍କା ଦେଲା )

ଭଜନ — ଏତିକି ମୋର ସେବାରେ ଲଗେଇ ଦେବେ ଆଜ୍ଞା !

ସ୍ୱାମୀଜୀ — (ହାତ ଟେକ ଆଶିଷ ଦେଇ, ରମା ଓ ଆଉ ଜଣେ ସ୍ତ୍ରୀଲୋକ ଧରିଥିବା ଝୁଲି ଭିତରେ ଟଙ୍କା ପକାଇ ଦେଲେ ହସି ହସି)

ତହସିଲଦାର—ସ୍ୱାମୀଜୀ, ମୁଁ ଆସିଛି ପଚାରିବାକୁ—

ସ୍ୱାମୀଜୀ—( ନିର୍ଦ୍ଦେଶ ଦେଲେ, ଗୀତ ବାଜା ବନ୍ଦ ହୋଇଗଲା )
କଅଣ ବାବା ?

ତହସିଲଦାର—ପଚାରୁଛି ଏ ସବୁ ଗୋଳମାଳ ତୁମେମାନେ ବନ୍ଦ କରିବ କି ନାଁ ? ସରକାର ଅଦାୟ ଦେବାକୁ ନାହିଁ, ଜମିଦାରଙ୍କ ପୁଣି ବାହାଘର; ଗାଁବାଲା ମାଗଣ ଦେବାକୁ ନାହାନ୍ତି; ଆଜି ପଞ୍ଚାଏ ମରଦ ମାଇକିନିଆଁ ଏକାଠି ହୋଇ; ମେଳ ବାନ୍ଧି—

ଭଜନ—ମେଳ ? ତହସିଲଦାର ବାବୁ, ସ୍ୱାମୀଜୀ କଅଣ ମେଳ କରନ୍ତି ?

ତହସିଲଦାର—ଆଉ କଅଣ କରନ୍ତି ? ଗୋଟେ ମେଣ୍ଟବାନ୍ଧି କହୁଚ କଅଣ ନାଁ, ମାଗଣ ଦବୁନାହିଁ । କଉ ? ଏମିତ ତମ ବଡ଼-ବଡ଼େ ଦେଇ ଆସିଛନ୍ତି ନା, ତମେ ଆଜି ନୂଆ ଦେଲ ?

ଭଜନ—ଦେଇଥିବେ, ସେ ଅଲଗା କଥା; ତାଙ୍କର ଥିଲା—ସେ ଦେଉଥିଲେ—ଆଜି ତ ଶହ ଶହ ଲୋକ ପେଟ ଭୋକରେ ମରୁଛନ୍ତି ! ଘରେ ଘରେ ବାଡ଼ି ମରୁଡ଼ି; ଗାଈ ଗୋରୁ ଫାଟୁଆ ବସନ୍ତରେ ଠିଆ ଶୋଇ ପଡ଼ୁଛନ୍ତି । ଜମିଦାର ଏତେବେଳେ ଦେଶକୁ ସମ୍ଭାଳି ନଅନ୍ତେ କଅଣ, ନା ଓଲଟି ମାଗଣ ? କଏ ଦବ ? କେଉଁଠୁ ଆଣିବୁ ?

ତହସିଲଦାର—ଆଉ ( ଝୁଲକୁ ଠାରି ) ଇଏ ବୁଢ଼ା ହୋଲାଟିବାଲକୁ ? ଠଙ୍କା କଅଣ ଜନମ ହୋଇ ପଡ଼ୁଛି ?

ହରିଶପୁ—ଏଇଟା ଦେଶଲାଗି, ଲୋକେ ବଞ୍ଚିବାପାଇଁ—ଯାହାର ଯାହା ମନ, ସେ ଦେଲା । ପେଟ କାଟି ଆମର ଭାଇମାନେ ଦଉଛନ୍ତି; ଆମର ଭାଇ ଖାଉଛନ୍ତି, ଏ ପଇସାଟିର ତ ଆଶା ! ମଟରଗାଡ଼ି

କଣା ହଉ ନାହିଁ, ନାଚତାମସା ହଉ ନାହିଁ, କି ବାଣ ରୋଷଣୀ ହଉ ନାହିଁ !

ତହସିଲଦାର — ତେବେ ତୁମେମାନେ ସବୁ ମାଗଣ ପାଉଣା ଦବ ନାହିଁ ?

ଭଜନ — କୋଉଠୁ କଏ ଦବ ?

ତହସିଲଦାର — ହୁଁ । ଏସବୁ ସ୍ୱାମୀଜିଙ୍କ ଶିଖାଣ । ଆଚ୍ଛା, ମୁଁ ଖବର ଦେଉଚି ଜମିଦାରଙ୍କ ପାଖକୁ । ବଳେ ଯାର ଫଳ ପାଇବ ଯେ !

ସ୍ୱାମୀଜୀ — ଭଲ କରିଚ ବାବା, ଜମିଦାର ନିଜେ ଥରେ ଆସି ତାଙ୍କ ପ୍ରଜାମାନଙ୍କ ଅବସ୍ଥା —

ତହସିଲଦାର — ଆଉ ତା ଆଗରୁ ତମକୁ ସବୁ କହିଦଉଚି, ଭଲରେ ମାଗଣ ଆଦାୟ ନ ଦେଲେ, ମୁଁ ସେବାସଦନ ଫେଚା — ସଦନ ଭଙ୍ଗି ଛଟରେ ଉଡ଼େଇ ଦେବି । ଦେଖିନେବ ! ଗୋଟେ ସେବାସଦନ ନାଁ ଦେଇ, କୋଉଠୁ ଗୋଟାଏ ସାଣ୍ଡ୍ରୀ ଖଣ୍ଡି ଯୋଗାଡ଼ କରି, ଲୋକଙ୍କୁ ଠକି ଟଙ୍କା ନେଇ, କୃଷ୍ଣଲୀଳା ଲଗିଚି — କଅଣ ନାଁ । ସ୍ୱାମୀ ଜୀ, ମଠ ! ! (ରାଗି ଉଠିଲେ)

୧ମ ଜଣ — ହଁ ହଁ, ମୁହଁ ସମ୍ଭାଳି କଥା କୁହ ତହସିଲଦାର ବାବୁ ! ଲୋକଙ୍କୁ ଧମକେଇ, ତଣ୍ଟି ଚପିବା କାଳ ଆଉ ନାହିଁ । ତମ ହାତରେ କଅଣ ହଉଚି ତୁମେ କର । ସେବା ସଦନରେ ହାତ ଦେଲେ ଫେ'ର୍ କହି ଦଉଚି, — ହାଡ଼ ଗୋଡ଼ ଠାଆ ଠାଆ ହୋଇଯିବ ତମର । ଚାଲ ସବୁ ଆମ କାମରେ । (କୀର୍ତ୍ତନ କରି ଚାଲିଗଲେ )

## ତୃତୀୟ ଦୃଶ୍ୟ

### ବିଜୟ୍ଳାର ଘର

[ ମଞ୍ଚରେ ଟେବୁଲ ଓ ଚୌକି ପଡ଼ିଛି । ସେଆଡ଼କୁ ପିଠି କରି ବିଜୟ୍ଳା ଏକ କରରେ ଥିବା ହାର୍‌ମୋନିୟମ୍ ଧରି ଗାଉଚି ଗୀତ, ଗୀତ ମଞ୍ଚରେ ଆସିଲେ ଜୟ୍ଳୀ—ବଡ଼ ବିଷଣ୍ଣ । ଧୀର ହୋଇ ବସି ଗୀତ ଶୁଣିଲେ । ବହିଟାଏ ଧରିଲେ, ମନ ଲାଗିଲା ନାହିଁ—ବଡ଼ ଅନ୍ୟ-ମନସ୍କ ସେ । ବିଜୟ୍ଳାର ଜୟ୍ଳୀ ପ୍ରତି ଦୃଷ୍ଟି ନାହିଁ, ସେ ତା'ର ଗୀତରେ ବିଭୋଳ ]

**ଗୀତ**

ଗୋପନେ, ଗୋପନେ,
ଯେ ଫୁଲଟି ଫୁଟିଲା ବନେ
ମଧୁର କଥା କହିଲା ମୋ କାନେ କାନେ, ମାନେ ମାନେ ।
ରହିଛି ସେ ରୂପ ଧରି, ମୋର ହୃଦୟର ମରମେ-ଜାଗରଣେ,
ଚେତନା, ଅଭିସାର ସେ,
ସପନ, ଘୁମ – ନୟନେ । ୧ ।
ମନ-ମାୟାବନ ହରିଣୀ ସେ ଚନ୍ଦ୍ରା-ସାଥୀ
ମେଘୁଆ ଆକାଶେ ଚନ୍ଦ୍ରାବତୀ
ଫଗୁଣ ଫଗୁଆ ଫୁଲ ଚହଲଜିଆ
ବିଧୂର କୋଇଲି କୁହୁ;-ବଉଳ ସାହା
ଅଭୁଲା, ମହୁଲ ବନେ – ମହୁଆ ପବନେ ।

( ଗୀତ ଭିତରେ ଜୟ୍ଳୀ ପକେଟରୁ କାଢ଼ିଛି ସିଗାରେଟ୍ କେଶ୍‌ଟା । ସିଟାଇ ସିଗାରେଟ୍‌ଟେ କାଢ଼ି, ପୁଣି ସେଥିରେ ରଖି ବନ୍ଦ କରୁଛି--ସବୁ ଅନ୍ୟମନସ୍କଭାବରେ – କିଛିକାଳ ପରେ ଲୁହ ପୋଛୁଥିବା ଭଳି ହୋଇ

ଉଠି ଚାଲିଗଲେ । ସିଗାରେଟ୍ କେସ୍ ଭୁଲରେ ନେଇ ନାହାନ୍ତି ।
ବିଜୟା ଗୀତ ଗାଉଚି—ଲକ୍ଷ୍ୟ ନାହିଁ ତାର ଏ ସବୁକୁ)

( ପଥଶ୍ରାନ୍ତ ହେବାପରି ଅନନ୍ତ ଆସି ପହଞ୍ଚିଲେ ସେଇ ଘରେ )

ଅନନ୍ତ—ବିଜୟା !

ବିଜୟା—[ଗୀତ ବନ୍ଦକରି] ଓଃ, ଅନନ୍ତ ବାବୁ, କେତେବେଳେ ଆସିଲେ ?

ଅନନ୍ତ—ଏଇ ତ ଲମ୍ବେ ଲମ୍ବେ ଆସି ପହଞ୍ଚିଲି—ଗୋଡ଼ ହାତ ବି ଧୋଇ ନାହିଁ ।

ବିଜୟା—ପାଇଲେ ରମାକୁ ?

ଅନନ୍ତ—ନାଃ, ତା ମାମୁଘରକୁ ବି ସେ ଯାଇ ନାହିଁ । ସାତ ବୋଲି ଆଉ ଗୋଟିଏ ଝିଅ,—ରମା ସାଙ୍ଗ ସେ, ତାକୁ ତାଙ୍କ ଘରର ଖବର ଦେଇ, ମାମୁଘରକୁ ଯାଉଚି ବୋଲି କହିଚି ।

ବିଜୟା—ମାମୁଘରେ ବି ତ ନାହିଁ ବୋଲି କହୁଛନ୍ତି ଆପଣ ।

ଅନନ୍ତ—ହଁ, ମୁଁ ନିଜେ ଯାଇଥିଲି, ସମ୍ଭବ—ଅସମ୍ଭବ ସବୁ ଠାଆ ତ ଖୋଜିଲି । କୋଉଠୁ କିଛି ଖବର ମିଳୁ ନାହିଁ ।

ବିଜୟା—ଆଉ କଅଣ -

ଅନନ୍ତ—ତୁମେ କଅଣ ମନେ କରୁଛ, ଆତ୍ମହତ୍ୟା କଥା ? ନା, ଏତେଦୂର—

ବିଜୟା—ଏତେଦୂର, ସେତେଦୁର କଅଣ ଅନନ୍ତ ବାବୁ, ମୁଁ ନିଜେ ତାକୁ ବୁଝାଇ ସୁଝାଇ, ଏତେକରି ସେଦିନ ଭାଇଙ୍କ ପାଖକୁ ନେବାକୁ ଯାଉଚି, ଝରକା ପାଖରେ ଠିଆ କରାଇ ଦେଖା-କରାଇବାକୁ ନେଲାବେଳକୁ—

ଅନନ୍ତ—ଚାଲି ଯାଇଥିବ କୁଆଡ଼େ ।

ବଜସ୍ମା — ମଫସଲିଆ ବୁଦ୍ଧି ତ ! କିଏ ଜାଣେ କଅଣ କରିଥିବ ? ଆଚ୍ଛା କହନ୍ତୁ ତ, ସେ ପକେଇଲା ଆଗ କାହିଁକି ? କଥା ନାହିଁ, ବାର୍ତ୍ତା ନାହିଁ —

ଅନନ୍ତ — କଅଣ ମନରେ ଭାବୁଥିବ । ହୁଏ ତ — (ଟେବୁଲ ଉପରେ ଜମ୍ପୀ ଛୁଡ଼ି ପାଇଥିବା ସିଗାରେଟ୍ କେସ୍‌ଟାରୁ ଗୋଟା-କେତେ ସିଗାରେଟ କାଢ଼ି ପୁଣି ସଜାଉଥାଏ, ଅନ୍ୟମନସ୍କ-ଭାବରେ )

ବଜସ୍ମା — (ଅନନ୍ତଙ୍କ ତଦବସ୍ଥ ଦେଖି ) ହଁ ହଁ, ଖଣ୍ଡେ ଚଳୁ, ଗୋଟାଏ ନୂଆ କଥା ଦେଖିଲି ଆଜ ।

ଅନନ୍ତ — [ହଠାତ୍ ଅପରାଧୀ ପରି କେସ୍‌ଟା ବନ୍ଦ କରି ଘୁଞ୍ଚାଇ] ଛି, ମୁଁ କେବେ ଏ ସବୁର ଧାର ଧାରେଁ ? ଖାଲିଟାରେ ଗୋଟେ ସେମିତି —

ବଜସ୍ମା — ଓଃ, ସତକଥା, ସିଗାରେଟ୍ କେସ୍‌ଟା ତାହାହେଲେ ଆପଣଙ୍କର ନୁହେଁ ? ଦେଖି ଦେଖି (ହାତକୁ ନେଇ), ଓଃ, ଏଇଟା ତ ଭାଇଙ୍କର, ଏଠିକି କିଏ ଆଣିଲା ? ହଠାତ୍ ମୋ ଟେବୁଲ୍ ଉପରେ ଆପଣଙ୍କ ହାତରେ ଦେଖି ମନେକଲି, ଏଇ କେତେଦିନ ଗ୍ରାମ ସଙ୍ଗଠନ କରିବାକୁ ଯାଇ, ହୁଏ ତ ଅନନ୍ତ ବାବୁଙ୍କର କ୍ଲାସ୍ ପ୍ରମୋସନ ହେଇଯାଇଛି ।

ଅନନ୍ତ — ଅସମ୍ଭବ, ଏ ସବୁର ଭକ୍ତ ହେବାଭଳି ଗୌରବ —

ବଜସ୍ମା — ଆପଣଙ୍କର ନାହିଁ, ତା ମୁଁ ଜାଣେ । ହଁ, ପଥଶ୍ରାନ୍ତ ହେଇ ଆସିଛନ୍ତି, ଅନ୍ତତଃ ଚା କପେ ? ରମା ବଷପୁରେ କଥା-ବାର୍ତ୍ତା ହେଉ ହେଉ ମୁଁ ଏକାବେଳେ ଭଦ୍ରତା ବି ଭୁଲି ଯାଇଥିଲି ଯେ — କ୍ଷମା ଦେବେ । (ଚାଲି ଯାଉଥିଲା)

ଅନନ୍ତ – ବିଜୟା, ମିଛରେ ମୋ ଲାଗି କଷ୍ଟ କରିବା ଦରକାର କଅଣ ?
ମୁଁ ଚା ଗୁ ଫା ଖାଏ ନାହିଁ, ତୁମେ ଜାଣ ।

ବିଜୟା – ଆଚ୍ଛା, ମୁଁ ଆସେଁ ଟିକଏ, ବସନ୍ତୁ ନା (ଚାଲିଗଲା)—
ଅଳ୍ପକାଳ ପରେ ଦୁଇ ହାତରେ ଦୁଇଟି ଗ୍ଲାସ ଧରି ଆସି
ଅନନ୍ତଙ୍କୁ ପାଖ) ନିଅନ୍ତୁ, ଏଥର ବୋଧହୁଏ, ଆପଣଙ୍କର
ଆପତ୍ତି କରିବାର କିଛି କାରଣ ନାହିଁ [ଗୋଟାଏ ଗ୍ଲାସ
ବଢ଼ାଇ ଦେଲେ]

ଅନନ୍ତ – ଓଃ ସରବତ ! (ପିଇଲେ)

ବିଜୟା – [ନିଜେ ପିଇ) ବାଧ୍ୟ ହେଲି, ଆପଣଙ୍କର ସେ ଉତ୍କଟ
ଲେକ୍‌ଚର ତାକୁ ଶୁଣି ଆଉ କି ଗୁ ଖାଇହୁଏ ? ମୁଁ ବି
ସେଇ ପନ୍ଥା ଧରିଲିଣି ।

ଅନନ୍ତ – ତୁମେ ! ! (ଆଶ୍ଚର୍ଯ୍ୟ ହୋଇ ଚାହିଁଲା)

ବିଜୟା – ଦେଖୁନାହାନ୍ତି,ମୁଁ ବି ଆଉ ଆଜିକାଲି ଚା ଖାଉ ନାହିଁ ଯେ !

ଅନନ୍ତ – ଚା ଖାଉ ନାହିଁ ! ରମା – ଗୋଟେ ମଫସଲି ଝିଅ, ମାନେ
ତମ କଥାରେ ଯାହାକୁ ତମେ କୁହ—rustic creature
( ରଷ୍ଟିକ୍ କ୍ରିଚର୍) ତା ଉପରେ ଫେର୍ ତମର ସ୍ନେହ,
ମାୟା ! –ଆଶ୍ଚର୍ଯ୍ୟ ହେଇ ଯାଉଛି ମୁଁ ।

ବିଜୟା – ମାନେ ? ଏସବୁ ଦେଖି, ନା ? (ହସି ଅନନ୍ତ ହାତରୁ ଗ୍ଲାସ
ନେଇଗଲା)

ଅନନ୍ତ – ଆହା, ଥାଉ, ଥାଉ; ମୁଁ –

ବିଜୟା – କିଛି ପାପ ଲେଖିବ ନାହିଁ ସେଥିରେ ! (ଚାଲିଗଲା—ଗ୍ଲାସ
ରଖିଆସିଲା )

ଅନନ୍ତ – ବାସ୍ତବିକ ବିଜୟା, ତମର ଏ ପରିବର୍ତ୍ତନ ଦେଖି –

ବିଜୟୀ — ଅଗତ୍ୟା — [ବସିଲା ଚୌକି ଉପରେ]

ଅନନ୍ତ—ଅଗତ୍ୟା-ମାନେ ?

ବିଜୟୀ—ହଁ, ମଣିଷ ତ ଫେର୍ !—ମନ ଅଛି, କାନ ଅଛି ତା'ର । କେବଳ ପଶୁ ଆପଣଙ୍କର ଲେକ୍‌ଚର ଶୁଣି ଶୁଣି—ଗୁଡ଼ାନ୍ତୁ, ଏଇନେ ଉମାଲାଗି କଅଣ କରାଯିବ କହନ୍ତୁ ତ ?

ଅନନ୍ତ — କିଛି ତ କେହି କହିପାରୁ ନାହାନ୍ତି ।

ବିଜୟୀ — ଦାମା ତ କିଛି ବଦମାସି କରି ନାହିଁ ଆଉ ?

ଅନନ୍ତ — କିଏ ଜାଣେ ? କିନ୍ତୁ ଆତ୍ମହତ୍ୟା ସେ କରି ନାହିଁ ।

ବିଜୟୀ—ହୋଇପାରେ, ବାକି ପଳେଇବାର ତ କୌଣସି କାରଣ ନାହିଁ ।

ଅନନ୍ତ — ହୁଏ ତ ଭୟ । ଦେଖେଁ, ଆଉ ଟିକିଏ ଖବର ନିଏଁ [ଉଠି] ମୁଁ କିଛି କାମ ସାରି ନାହିଁ, କାମ ଦାମ ସାରି ଦେଖିବି, ଆଉ ଥରେ ତା'ର ଖବର ନେବି, ତା ପରେ—

ବିଜୟୀ— କାମଦାମ, ମାନେ ? ଗାଧୁଆ ପାଧୁଆ—ଏଇ ତ ? ଏଇଠି ସାରିଲେ କି ଚଳିବ ନାହିଁ ?

ଅନନ୍ତ—ନାଇଁ, ମୁଁ ଯାଏଁ । [ଉଠିଲେ]

ବିଜୟୀ—ହଁ ହଁ, ସତେ ଆମର ତ ଖଦଡ଼ ନାହିଁ, ବଦଳିବା ପାଇଁ ।

ଅନନ୍ତ—(ହସି) ତା ନୁହେଁ, ତେବେ—ଯାଏଁ, ଆସିବି ଯେ ।

ବିଜୟୀ—ତା'ହେଲେ ଆମର ଏଇଠି ଖାଇବେ ?

ଅନନ୍ତ — ହଉ, ସେଇଆ ହେଲା । (ହସି ଚାଲିଗଲା)

ବିଜୟୀ । [ଅନନ୍ତ ଯିବା ବାଟକୁ ଚାହିଁ, ଟେବୁଲରେ ହାତ ରଖି ଦୀର୍ଘନିଃଶ୍ୱାସ ମାରିଲା)

ଜୟୀ—(ଆସି) ବିଜ ! (ବିଜୟୀ ଚମକି ଉଠିଲା)

ବିଜୟା—କଅଣ ଭାଇ ?
ଜୟୀ—ମୋ ସିଗାରେଟ୍ କେସ୍‌ଟା ଏଠି—
ବିଜୟା—[ଦେଖାଇ] ହଁ, ମୁଁ ସେଇଆ ଭାବୁଛି. ଏଠିକି ଆଣିଲା କିଏ ?
ଜୟୀ—(ବସି ଖଣ୍ଡେ ସିଗାରେଟ୍ କାଢ଼ି) କିଏ ଆଣିଥିବ !
ବିଜୟା—ତୁମେ ଜାଣି ନା ? କିଏ ଆଣିଥିଲା ମୋ ଘରକୁ ?
ଜୟୀ—[ହସି] ତୁ ଯେ, ନ ଆଣିଥିବୁ ଏହାର ପ୍ରମାଣ କଅଣ ?

ବିଜୟା—ମୁଁ !? ମୋର ସିଗାରେଟ୍ କେସ୍‌ଟା କଅଣ ହଉଥିଲା ? ଖାଏଁ ନା ଧାରେଁ ? କେବେ ଦେଖିଛ ?

ଜୟୀ—ସବୁ କଥା କଅଣ ଲୋକେ ଖାଲି ଦେଖୁଥାଆନ୍ତି ? ଏଇ କେସ୍‌ଟା—ତୋ ଘରେ ଥୁଆ ହେଇଚି. —କେମିତି ଆସିଲା, ତୁ କଅଣ ଦେଖିଲୁ ?

ବିଜୟା—(ଗେଲେଇ) ନାଇଁ ଭାଇ, ସତେ କିଏ ଆଣିଲା ?
ଜୟୀ—ମୁଁ କେମିତି କହିବି ? ହୁଏ ତ ଯାହାର—
[ଜମିଦାର ଶୀଘ୍ର ଆସିଲେ—ହାତରେ ଖଣ୍ଡେ ଚିଠି]

( ବିଜୟା ସିଗାରେଟ୍ କେସ୍‌ଟା ଲୁଚାଇ ଛିଡ଼ା ହେଲା)

ଜମିଦାର—ଅନନ୍ତ ଆସିଥିଲା ପରା ? ସେ କାଇଁ ? ଭାରି ତ ସେହିନ ସୁପାରିସ କରିପକାଉଥିଲା ପ୍ରଜାଙ୍କ ପାଇଁ—ସାହାଯ୍ୟ ଦିଅ, ବନ୍ଧନ ଦିଅ, ଅନ୍ନଛତ୍ର ଖୋଲ, ତାଙ୍କୁ କାମ ଦିଅ—ଭାରି ଲମ୍ବା ଲମ୍ବା କଥା କହୁଥିଲା ପ୍ରଜାଙ୍କର ହୋଇ । ଆସି ଦେଖୁ ତ ଏ ଚିଠି । ବାବା ! ସେମାନଙ୍କର କେବେ ଭଲ କରି ଆସେ ? ନ ଜାଣି କରି କଅଣ ଜମିଦାରମାନେ—

ବିଜୟା—କଅଣ ବାପା ?

ଜମିଦାର—(ଚିଠି ବଢାଇ) ପଢ଼, ଚିଠି ପଢ;ଅନନ୍ତବାବୁଙ୍କ ଗ୍ରାମ-ସଙ୍ଗଠନର ଫଳ ! ମୂର୍ଖ ପ୍ରଜା, ତାଙ୍କୁ ହାତ କାମୁଡ଼ା ଶିଖାଇବ ?

ଜୟୀ—(ଚିଠି ପଢ଼ିଲେ ବିଜୟାଠୁ ନେଇ, ବିଜୟା ଦେଖୁଥାଏ)

ଜମିଦାର—ପଢ଼ିଲ ? ଦେଖିଲ ? ମାଗଣ ଏମାନେ ଆଜ ଦେଲେ ନାହିଁ । ଏମିତି ଦେଇ ଆସୁଥିଲେ । ହିଁ, ମାନୁଛି,ଆଜ ସମସ୍ତି ଟିକେ ଖରାପ । ତା ବୋଲି ସମସ୍ତେ ତ ସମାନ ନାହାନ୍ତି । ହୁଏ ତ କମ୍ ବେଶି ପାଇଁ ମୋ ପାଖେ ଓଜର ଆପତ୍ତି କରି ପାରି ଥାଆନ୍ତେ ! କିନ୍ତୁ ଗୋଟା ସାରା ଗାଆଁ ଜିଦ୍ ଧରି···ଆଚ୍ଛା —

ବିଜୟ—ଅନନ୍ତ ବାବୁ ଆସନ୍ତୁ, ତାଙ୍କୁ କହିଲେ ଅନ୍ତତଃ ସେ ଥରେ ଯାଇ ପ୍ରଜାମାନଙ୍କୁ ବୁଝାଇ ଦେବେ, କଥାଟା ।

ଜମିଦାର—ଆଉ ବିକ୍ରମ ସିଂହ ସାତପୁରୁଷି ଜମିଦାର, ପ୍ରଜାଶାସନ ତାର ଜନ୍ମଗତ ଅଧିକାର--ସେମାନେ କେମିତି ବୁଝିବେ--- ସେ କଥା ମୋତେ ଶିଖିବାକୁ ହେବ ନାହିଁ, କାହାଠାରୁ । ମୁଁ ନିଜେ ଯିବି । ଶାସନ ମୋତେ ଜଣା, ଆଜ, ଏଇ ତାଙ୍କୁ ବୁଝାଇ ଦେବି ଯେ; ମୁଁ ଜମିଦାର । (ବନ୍ଧୁକ ଉଠାଇଲେ)

ବିଜୟା—(ଚମକି) ବାପା !

ଜମିଦାର—ନାଇଁ ବିଜୟା, ଶାସନ ନେଇ ତୁ କିଛି କହ ନା । ମୁଁ ବାହାରିଛି ଇଲାକା ଉପରକୁ, ସବୁ ପ୍ରସ୍ତୁତ ।

[ଚାଲିଗଲେ]

ଜୟୀ—ବାପାଙ୍କର ଯେ ଜିଦ ତୁ ଜାଣୁ, ହୁଏ ତ ଗୁଡ଼ାଏ ନିରୀହ ପ୍ରଜା —

ବିଜୟା — କେଉଁଣ ଯେ ଗୋଳମାଳ ହୋଇ ଉଠିବ, କିଏ ଜାଣେ ? ବାପା ଯେମିତି ରାଗୀ — ମୋତେ ତ କାହିଁକି ଭଲ ଦିଶୁନାହିଁ ।

ଜୟନ୍ତୀ—ଅନନ୍ତଟା ଭଲା ଏତେବେଳେ —

ବିଜୟା — ସେ ତ ଆସିଥିଲେ, ଚାଲିଗଲେ ଏଇନେ । ଫେର୍ ଖବର ଦେଲେ ସିନା ଯାଇ—

ଜୟନ୍ତୀ—(ଦୂରକୁ ଚାହିଁ) ହୋଇଛି, ବାପାଙ୍କର ସୁଆଗ ବାହାରିଲାଣି । ଅନନ୍ତକୁ ଆଉ ଖବର ଦେବାକୁ ବେଳ ନାହିଁ, ମୁଁ ଦେଖେଁ —

( ହଠାତ୍ ଚାଲିଗଲା )

---

## ଚତୁର୍ଥ ଦୃଶ୍ୟ

ସତ୍ୟପୋଖରୀ - ସେବା-ସଦନ

( କେତେଜଣ ପୁରୁଷ ଓ ମହିଳାକର୍ମୀ ସୂତାକଟା ଇତ୍ୟାଦି କାମରେ ଲାଗିଥିଲେ; ସ୍ୱାମୀଜୀ ଗୀତ ଗାଉଥିଲେ )

ଗୀତ

ଚାଲରେ, ଆଗେ ବଢ଼ିଚାଲ,

ଘୁଞ୍ଚ କର ପଥର ତୁ ନ ହୁଅ ବେହାଲ୍ ।

ମୁଣ୍ଡ ଝାଳ ତୁଣ୍ଡେ ମାର

ଖଟୁ ତୁ ମୂଲିଆ

ଅରଜନ ଖାଏ ଚୋର

ଶୋଷ ଗଉନ୍ତିଆ,

ଚୋର ନାହିଁ କନା, ପିନ୍ଧେ —

ଶୋ ସାଲ ଦୋସାଲ ।

ସରଗେ ସମ୍ଭବେ ନାହିଁ ଦେବ ଭଗବାନ
ଗୃହୀ ମୂଳଆର ତାଙ୍କେ ଅଛନ୍ତି ଆସନ,
ଆସିଛି ତୋ ଦିନ ଫେରି, ଜଳୁଛି ମସାଲ୍—
ଆଗେ ବଢି ଚାଲ୍ ।

(ଓଦା ହାତ ପୋଛୁ ପୋଛୁ ଆସିଲା ରମା । ହାତ ପୋଛିସାରି ସ୍ୱାମୀଜୀଙ୍କୁ ପ୍ରଣାମ କଲା । ସ୍ୱାମୀଜୀ ଗୀତ ବନ୍ଦ କରି ପଚାରିଲେ ତାକୁ)

ସ୍ୱାମୀ—ମାଆ, ଏତେ ଡେରି କରି ତୋର ଆଜ ?

ରମା—ସେବାସଦନଟିଏ ତ ଖୋଲିଦେଲେ ବାବା, ଦେଖେ କିଏ ? ଆଜ ଯେଉଁ ପିଲାଟି ଆସିଛି, ଆହାରେ ବିନା ତା'ର ଜୀବନ ନାହିଁ । ଏଇଠାଥରେ ତ ଖୁଆଇ ଦେଲେ ଚଳିବ ନାହିଁ । ତା'ରି ସେବାରେ ଲାଗିଥିଲି । ପୂନାକୁ ରଖାଇ ଦେଇ, ଆଲଟିକୁ ଆସିଲି ।

ସ୍ୱାମୀଜୀ—ବେଶ୍, ବେଶ୍ କରିଛୁ ରମା ! ମଫସଲରେ ବଢ଼ିଛୁ ତୁ ! ତୋର ପୁଣି ଏ ବୁଦ୍ଧି ହେବ ବୋଲି କିଏ ଜାଣି-ଥିଲା ? ଆଜ ବୁଝୁଛି ମାଆ, ଭଗବାନ ତୋତେ ଘରୁ କାଢ଼ିଆଣି, ସେଦିନ ବଣ ଭିତରେ ପକାଇ ଥିଲେ କାହିଁକି ? ମୋର ବା ହଠାତ୍ ତୋ ସାଙ୍ଗେ ଦେଖାହେଲା କାହିଁକି ? ସେତେବେଳକୁ ସେବାସଦନ ଖୋଲା ହୋଇ ନ ଥାଏ— ।

ଜଣେ—ସେବା ସଦନ ଖୋଲା ହେବାର ତ ଏଇ ଦିନ କେଇଟା ହବ କି ନାହିଁ, ନୁହେଁ ?

ଆଉ ଜଣେ—ହଁ,ଅନନ୍ତବାବୁ ଯିବାର କେଇଦିନ ପରେ ତ ଆରମ୍ଭ ।

ରମା—ଅନନ୍ତ ବାବୁ ! ( ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା )

ସ୍ୱାମୀଜୀ—ସେ ଜଣେ ଦେଶସେବୀ ମାଆ ! ଘରଦ୍ୱାର, ଖାଇବା, ପିଇବା, ସବୁ ଭୁଲି, ସେ ବସିଛନ୍ତି ଲାଗିଛନ୍ତି ଦେଶ ସେବାରେ । ଲୋକଟି ଟିକିଏ ରୁକ୍ଷ, ଏକଜାଗିଆ, ମାତ୍ର ଅକ୍ଳାନ୍ତ ପରିଶ୍ରମୀ ।

ରମା—ସେ କୋଉଠି ଅଛନ୍ତି ?

ସ୍ୱାମୀଜୀ—ଯାଇଛନ୍ତି ତାଙ୍କ ଗାଆଁକୁ, ଆସିବେ ଯେ । ତୁ ଆସିବାର ଅଳ୍ପ କେଇଦିନ ଆଗରୁ ତ ସେ ଏଠୁ ଚାଲିଗଲେ ।

ରମା—ସେ କଅଣ ଆସିବେ ଏଠିକି ଫେରି ?

ସ୍ୱାମୀଜୀ—ଅନେକଦିନୁ ତ ଆସିବାର କଥା ମାଆ ! ବୋଧେ ପାଆ କିଛି ଡେରିଲା କି କଅଣ ।

ପୂର୍ଣ୍ଣ—(ଭିତରୁ ଆସି) ରମା ଅପା, ପିଲାଟି ଭାରି କାନ୍ଦୁଛି, ଆମେ ସବୁ ପାରୁନୁ, ତୁମେ ଟିକିଏ ଆସ ମ ।

ରମା—ଶୋଇଥିଲା, ଉଠିପଡ଼ିଲା ଏତେବେଳେ ? ତମେ ସବୁ ଗୋଳମାଳ କରିଥିବ କି କଅଣ ? ଚାଲ୍, ଚାଲ୍ ।

(ଚାଲିଗଲେ)

ସ୍ୱାମୀଜୀ—(ହସି) ଆସ, ଦେଖିଯିବ ଆସ, ସେବାସଦନ ଭିତରେ ଦେଖିଲେ ଜାଣିବ ରମା କଅଣ ।

ଦୁହେଁ—ଚାଲନ୍ତୁ ।

( ସମସ୍ତେ ଗଲେ )

---

## ପଞ୍ଚମ ଦୃଶ୍ୟ

କକ୍ଷ – (ବିଜୟୀ ଓ ଗୁମାସ୍ତା)

ବିଜୟୀ—ସାଙ୍ଗରେ ଆଉ କିଏ ଗଲା ?

ଗୁମାସ୍ତା—ଲୋକ ପଚ୍ଛଣ ହେବ ଯାଇଛନ୍ତି । ପ୍ରଜାଏ, ଗୁକର ସବୁ ତ –

ବିଜୟୀ – ବୁଝିଲ, ଅନନ୍ତବାବୁଙ୍କୁ ଡ଼କେଇଲ ?

ଗୁମାସ୍ତା—ହ'ଁ। ଲୋକ ଗଲେଣି ତା ପଛେ, ତା ପଛେ ।

ବିଜୟୀ – କିଛି ଖବର ନାହିଁ ?

ଗୁମାସ୍ତା—ନାଁ ।

ବିଜୟୀ – ଘରେ କଅଣ ନାହାନ୍ତି ସେ ?

ଗୁମାସ୍ତା—କେଜାଣି, ଥିବେ କି ନଥିବେ ସେ । ନଇଲେ ଯିବ କି ?
ତାଙ୍କୁ ଯାଇ––

ବିଜୟୀ—ହଁ, ହଁ, ଯା, ବେଗେ ଡାକିଆଣ । ଭାଇ ଗଲେ କୁଆଡ଼େ ?

( ଅନନ୍ତ ଆସିଲେ )

ବିଜୟୀ—ଓଃ, ଏତେ ଡେରି କଲେ । ଭାଇ କାହାନ୍ତି ?

ଅନନ୍ତ—କାଇଁ, ମୁଁ ଜାଣି ନାଇଁ ତ ।

ବିଜୟୀ—ଜାଣି ନାଇଁ ତ !' ଆପଣଙ୍କ ପାଖକୁ ଯାଇ ନାହାନ୍ତି ସେ ?

ଅନନ୍ତ – ନାଇଁ ତ ।

ବିଜୟୀ— ବସନ୍ତୁ, ବସନ୍ତୁ । ବିପିନ ବାବୁ, ଭାଇଙ୍କି ଦେଖିଲ, ଯା ।
(ଗୁମାସ୍ତା ଗୃହ.ଗଲା)

ଅନନ୍ତ – କଅଣ, କଥା କଅଣ ? ବଡ଼ ବିବ୍ରତ ହେଲପରି –

ବିଜୟୀ—ବସନ୍ତୁ, କହୁଚି । ଆପଣ ଯିବା ପଛେ ପଛେ ବାପା
ଗୋଟେ ଚଠି ଆଣି ଆସିଲେ ଯେ, ପ୍ରଜାଏ କୋଉଁଠି ମେଳ

ବାନ୍ଧି, ତହସିଲଦାର ସଙ୍ଗେ ଝଗଡ଼ା କରି ବସିଛନ୍ତି—ଖଜଣା, ମାଗଣ, ଦେବାକୁ ନାରାଜ ।

ଅନନ୍ତ—କେଉଁଠି ?

ବଜୟୀ—ତା ତ ମୁଁ ଜାଣିନାହିଁ, ଠିକ୍‌କରି । ବଡ଼ିନ ଗୁମାସ୍ତା ଜାଣିଥିବେ ନିଶ୍ଚୟ । ବାପା ତ ଯେମିତି ଲୋକ, ଜାଣନ୍ତି । ସେ ସାଙ୍ଗେ ସାଙ୍ଗେ—ଏକଦମ୍ ଅଖିଆ ଅପିଆ ବାହାରି ଗଲେ । ଗୁଡ଼ାଏ ଲୋକ ଯାଇଛନ୍ତି ସାଙ୍ଗରେ । ହୁଏତ ଗୋଟେ କିଛି ଗୋଳମାଳ—

ଅନନ୍ତ—ଅସମ୍ଭବ ନୁହେଁ । ବାପା ନିଜେ ଯିବା କି ଦର୍କାର ଥିଲା ? ଆମେମାନେ ତ ଅଛୁଁ, ଜୟୀ କାହିଁ ?

ବଜୟୀ—ବାପାଙ୍କ ଯିବା ପଛେ ପଛେ, ସେ ତରତର ହୋଇ ବାହାରିଗଲେ । ମୁଁ ତ ମନେକଲି, ହୁଏତ ସେ ଆପଣଙ୍କୁ ଖବର ଦେବାକୁ—

ଅନନ୍ତ—କାହିଁ ? ନାଇଁତ । ରାସ୍ତାରେ ବି ଦେଖିନାହିଁ । ଖବରଟା ଠିକ୍ ବୁଝିହେଲା ନାହିଁ ଯେ, କେଉଁଠି କଅଣ ହେଉଛି ।

ବଜୟୀ—ଗୁମାସ୍ତା ସେ କଥା କହି ପାରିବେ, ଡାକୁଛି ମୁଁ । (ଉଠି) ବାଲିଆ, ବାଲିଆ ।

ବାଲିଆ—ଆଜ୍ଞା ( କହି ଆସିଲା )

ବଜୟୀ—ଗୁମାସ୍ତାଙ୍କୁ ଡାକ ଦେ ତ ବେଗେ ।

ବାଲିଆ—ଆଜ୍ଞା ! ( ଚାଲିଗଲା )

ଅନନ୍ତ—ବିଜୟୀ ! ମଫସଲରେ ପ୍ରଜାଙ୍କ ଅବସ୍ଥା ଯାହା, ବିଦ୍ରୋହ ସେଥିରେ ଅସମ୍ଭବ ନୁହେଁ । ହୁଏତ ତହସିଲଦାର ଟିକିଏ

ଜୁଲମ କରିଥିବେ । ସେଇଟ ତ ଠାଉ ରହିଛି । ବାପାଙ୍କର ନିଜେ ଯିବାଟା ଭଲ ହେଲା ନାହିଁ ।

ଗୁମାସ୍ତା—(ଆସି) ସାନବାବୁ ସାଇକେଲ ନେଇ କୁଆଡ଼େ ବାହାରି ଯାଇଛନ୍ତି ।

ଅନନ୍ତ— ଗୋଳମାଳ କେଉଁ ଗାଆଁରେ ହେଉଛି ?

ଗୁମାସ୍ତା—ସରପୋଖରୀ ମୌଜା ।

ଅନନ୍ତ—ସରପୋଖରୀ ! (ଥକାମାରି ଗୁହିଁ ରହିଲେ )

ବିଜୟା—କେଉଁଠି ସେ ଗାଆଁଟା ? ଆପଣ ଜାଣିଛନ୍ତି ସେଠା ଲୋକେ କମିତି ?

ଅନନ୍ତ—ଜାଣେ । ବିପିନ୍ ବାବୁ, ଏଠି କିଏ ଆସିଥିଲା, ଜାଣନ୍ତି ଆପଣ ?

ଗୁମାସ୍ତା—ନାଁ, ଏଠିପାଇ ତ ବଡ଼ବାବୁ ରାଗି, ସାଙ୍ଗେ ସାଙ୍ଗେ ସୁଆରି ବେହେରା ତଲବ କରି, ବାହାରିଲେ । ମୋ ଶୁଣିବାରେ ଅନନ୍ତବାବୁ, ସେଠା ତହସିଲଦାରଙ୍କୁ—

ଅନନ୍ତ—ଆଚ୍ଛା, ଆଚ୍ଛା, ଆପଣ ଯାଆନ୍ତୁ । ସାନବାବୁ କିଛି କହି ଯାଇ ନାହାନ୍ତି—କୁଆଡ଼େ ଗଲେ ?

ଗୁମାସ୍ତା—ହଁ, ସେ ତ ସାଇକେଲ ଧରି ବାହାରିଗଲେ ବୋଲି ପିଆଦା କହୁଚି, ବଡ଼ବାବୁଙ୍କ ଯିବା ପଛେ ପଛେ । ମତେ ଆଉ ତାଙ୍କୁ ଦେଖିବାକୁ ତର ନାହିଁ । ମୁଁ ତ ସରପୋଖରୀ ଯିବାକୁ ବଡ଼ବାବୁ କହିଗଲେ ।

ଅନନ୍ତ – ହଉ ହଉ, ଆପଣ ଯାଆନ୍ତୁ ।

ଗୁମାସ୍ତା – (ଚାଲିଗଲେ)

ଅନନ୍ତ – ବିଜୟା, ମୋତେ ବାହାରି ଯିବାକୁ ହବ ।

ବିଜୟ୍ବା—ଆପଣ···କୋଉଠିକ ?

ଅନନ୍ତ—ସଉ ଗୋଖବା । ସେଇ ଗାଆଁରେ ମୁଁ କାମ ଆରମ୍ଭ କରିଥିଲି ।

ବିଜୟ୍ବା—ସେଇ ଗାଆଁ ? ସେଇଠି ଏ ଗୋଳମାଳ ! ସେଠିକା ଲୋକ ଏଇଆ ଶିଖିଲେ ?

ଅନନ୍ତ—ମୁଁ କହି କହି ପାରୁନାହିଁ । ଶୁଣିଥିଲି ପ୍ରଜାଏ ଝିକାଏ ଛାଡ଼ି ଉଠିଥିଲେ,- ତହସିଲଦାରଙ୍କ ମାଗଣ ଛାଗଦାରେ ।

ବିଜୟ୍ବା—(ଭାବି) ତା ହେଲେ ତ, ସେଇଠି ବୋଧହୁଏ—କେତେ ବାଟ ସେ ଗାଆଁଟା ଏଠିକ ?

ଅନନ୍ତ—ବାଟ ବେଶି ନୁହେଁ, ସାତ ଆଠ ମାଇଲ ହେବ ।

ବିଜୟ୍ବା—ତାହାହେଲେ, ବାପା ହୁଏ ତ ପହଞ୍ଚିଗଲେଣି, ଏତେ-ବେଳେ ଯାଇ ଲଭ ବା କଅଣ ? ଯାହା ହବାର—

ଅନନ୍ତ—ଦେଖାଯାଉ, (ଉଠି) ମୁଁ ଗଲିଲି ।

ବିଜୟ୍ବା—ମୁଁ ଗଲେ—

ଅନନ୍ତ—ତୁମେ ! ( ଆଶ୍ଚର୍ଯ୍ୟ ହୋଇ) ତୁମେ କେମିତି ଯିବ ? ଆଉ ସେ ସବୁ ଯାଗାକୁ ତୁମେ ଯିବାଟା—

ବିଜୟ୍ବା—ଅସୁନ୍ଦର—ନା ?

ଅନନ୍ତ—ନା, ତୁମ ଯିବାର ଦର୍କାର ତ କିଛି ନାହିଁ—ଏ ଗୋଳମାଳ ଭିତରକୁ ।

ବିଜୟ୍ବା— ଆପଣ ଯାଉଛନ୍ତି ଯେ—

ଅନନ୍ତ—(ଅଳ୍ପ ହସି) ମୋ କଥା—ଆଉ ତୁମ କଥା ?

ବିଜୟ୍ବା—ତା ମାନେ ?

ଅନନ୍ତ—ମୁଁ ବାରବୁଲା ଫକୀର—ଆଉ ବଜସ୍ୱୀ,—ତୁମେ ଜମିଦାର କନ୍ୟା ।

ବଜସ୍ୱୀ—(ହଠାତ୍ ଗମ୍ଭୀର ହୋଇ ଟେବୁଲ ପାଖେ ଠିଆହେଲା—ଟେବୁଲରେ ଦ୍'ଟା ହାତ ରଖି । ଏଣ୍ତକବେଳେ ଖଣ୍ଡିଏ (ଚିଠି ଗୁଟକର ବାଲୁଆ ଆଣି ଦେଇଚ ଅନନ୍ତକୁ)

ବାଲୁଆ—(ଅନନ୍ତକୁ) ଚିଠି । (ଚୁଲଗଲା)

ଅନନ୍ତ—(ଚିଠି ପଢ଼ିବାରେ ଲଗିଲା—ବଜସ୍ୱୀକୁ ଲକ୍ଷ୍ୟ ନାହିଁ । ବଜସ୍ୱୀ ସେମିତି ଛୁଡ଼ା ହେଇଚ ।) ଆରେ, ମୋତେ ଟିକଏ ଡାକଲା ବ ନାହିଁ (ବଜସ୍ୱୀକୁ) ଦେଖିଲଣି ଜର୍ପୀର ଚିଠି । (ଚିଠି ଦେଖାଇ ବୁହିଁ ଦେଖେ ବଜସ୍ୱୀ କାନ୍ଦୁଚ । ଡାକଚ) ବଜସ୍ୱୀ !

ବଜସ୍ୱୀ—[ମୁହଁ ଟେକ ଦେଲା—ଦ୍'ଟୋପା ଲୁହ ତା ଆଖିରେ ଛଳ ଛଳ)

ଅନନ୍ତ—(ବଜସ୍ୱୀର ହାତଧର) ବଜ ! (ସମସ୍ତେ ମାରବ)

— ପରଦା —

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

(ସର ପୋଖରୀ – ସେବାସଦନ । ଦୁଆର ଖୋଲା । ଗୋଟାଏ ପାଖେ ଅରଟ ଧରି ଜଣ କେତେ ସ୍ତ୍ରୀଲୋକ କାମରେ ଲାଗିଛନ୍ତି, ଗୀତ ଗାଉଛନ୍ତି । ଏତିକବେଳେ ସେଠିକି ଆସିଲେ ଜମିଦାର— ସାଙ୍ଗରେ ପିଆଦା ଓ ଆଉ କେତେଜଣ ଲାଠିଆଳ)

ଗୀତ

ଗିରିବନ-ମନୋହର, ଶ୍ୟାମ-କଳେବର
ସୁନ୍ଦର ମୁଖ, - ସୁଖ-ଦାୟୀ ।
ବଙ୍ଗ-ମହୋଦଧି ଚରଣ ପଖାଳେ
ସ୍ବଚ୍ଛ ଲହରୀ;—କୂଳଶାୟୀ ।
କୋଟି ପଣ୍ଡିତ ଜନ ଧନ୍ୟ ହୁଏ, ଯହିଁ
ପତିତପାବନ ଚାହିଁ,
ଗଙ୍ଗାଧର-ହର, ଅର୍କ ଭୂମି ଏ ମୋ
ଜନମୀ ଅଞ୍ଚଳ ଛୁଇ ।
ଧନ ଧାନ୍ୟ ମଣି ରତନ ଖଣି, କବି-
କାବ୍ୟ କଳା ଘରେ ଥାଇ,
ଅନ୍ଧ ସୁତା ସୁତ ନ ଚହ୍ନିଲେ ଯଦି
ଭୋଗ ଭାଗ୍ୟ ଆଉ କାହିଁ ?

ଜମିଦାର—ଓ, ସେବା-ସଦନ !
( ସ୍ତ୍ରୀଲୋକମାନେ ଚାଲିଗଲେ ଭିତରକୁ । ରମାକୁ ଠାର ଦେଲେ ସେ ମଧ୍ୟ ଚାଲିଗଲା )

ପିଆଦା—ହଜୁର ।
ଜମିଦାର—ଏମାନେ ?
ପିଆଦା—ଘର ନାହିଁ, ଦୁଆର ନାହିଁ—ପଟେଞ୍ଚ ଛତରଖାଇ ମାଇକନିଆ ।

ଜମିଦାର—ଚୂପ୍ କର, ଏ ସେବା-ସଦନ ତିଆରି କରିଛି କିଏ ?

ପିଆଦା—ହଜୁର,ଗାଆଁ ବାଲା । ତାଙ୍କ ହାତରେ କଅଣ ଟଙ୍କା ନାହିଁ ? ଆମକୁ ଦେବେ ନାହିଁ । ଯୋଗାଟେ ମେଣ୍ଟ ବାନ୍ଧି, ଠେଣ୍ଟି ଧରି ବସିଛନ୍ତି । କଅଣ ନାଁ—ମାଗଣ ଆମେ ଦେବୁ ନାହିଁ । କରେ ! ତୁମ ସାତ ପୁରୁଷ ଏମିତି ଦେଇ ଆସୁଥିଲେ—ନାଁ—ତୁମେ ଆଜ ନୂଆ ?

ଜମିଦାର—ହୁଁ, ସମସ୍ତେ ମନା କଲେ ?
ପିଆଦା—ଗୋଟିକଠୁଁ—ଗାଆଁ ଏ ମୁଣ୍ଡ୍ ସେ ମୁଣ୍ଡଯାକେ ।
ଜମିଦାର—ଓ, Revolution ( ରିଭଲ୍ୟୁସନ୍ ) ତହସିଲଦାର କାହାନ୍ତି ?
ପିଆଦା—ହଜୁରଙ୍କ ସବାରି ଲାଗିବା ଆଗରୁ ତାଙ୍କୁ ଗାଆଁ ବାଲା ସବୁ କାହିଁକି ଡାକି ନେଇଛନ୍ତି ତ ।

ଜମିଦାର—ଆଚ୍ଛା, ଭାଙ୍ଗ ଏ ସେବା-ସଦନକୁ—ଏଠିକାର ସବୁ ଜିନିଷ ବୁହାଇ ନିଅ କଚେରୀ ଘରକୁ ।

ପିଆଦା—ଗୋଟା ଗାଆଁ ଛାତି ଉଛୁନ୍ତି ଯେ—

ଜମିଦାର—ଚୂପ୍‌କର, ନମକ୍ ହାରାମ ! (ନିଜ ପକେଟରୁ ପିସ୍ତଲ କାଢ଼ି ଧରି, ହଲାଇ) ଭାଙ୍ଗ, ଦେଖେଁ ଗାଆଁଟା ତା'ର କଅଣ କରିପାରନ୍ତି ।

(ଗ୍ରାମବାସୀମାନେ ପ୍ରବେଶ)

୧ମ ଗ୍ରାମବାସୀ—[ଜମିଦାରଙ୍କର ଭାଙ୍ଗିବାକୁ ଯାଉଥିବା ଲୋକକୁ ବାଧାଦେଇ] ନାଁ ।

ଜମିଦାର—କଅଣ ହୁଅ ତୁମେମାନେ ?

ଗ୍ରାମବାସୀ—ଏ ଘର ଭାଙ୍ଗି ପାରିବେ ନାହିଁ ଆପଣ ।

ଜମିଦାର—ତାହାଲେ ମୁଁ ବୁଝିବି, ତୁମେମାନେ ମାଗଣ ଦେବାକୁ ରାଜି ?

ଗ୍ରାମବାସୀ—ନାଁ, ମାଗଣ ଆମେମାନେ ଦବୁନାହିଁ ।

ଜମିଦାର——ଦବାକୁ ହବ—ଆଜି ନୂଆ ନୁହେଁ, ପୂର୍ବପୁରୁଷରୁ ତମର ଏ ମାଗଣ ଦେଇ ଆସିଛନ୍ତି ।

ଗ୍ରାମବାସୀ—ଠିକ୍, ତା ବୋଲି ସେଇଟା ଜମିଦାରଙ୍କର ଦାବୀ ନୁହେଁ ।

ଜମିଦାର—ଦାବୀ ବୋଲି ଯିଏ କହନ୍ତି ସେ—

୧ମ ପ୍ରଜା—ଆପଣଙ୍କର ଖଜଣା, ଭୂକର, ଜଳକର, ପଥକର, ଇତ୍ୟାଦି ଦାବି ଆମେ ଯାହା ଦଉଁ, ତା' କମ୍ ନୁହେ—ଏକର ପିଛା ସରକାର ସାତଟଙ୍କା ନେଲେ, ଜମିଦାର କସନ୍ତି ତିନିଗୁଣା—

ଜମିଦାର—ବାସ୍, ବାସ୍, ସେଇଟାବି ଜମିଦାରର ହକ, ଆଉ ସେ ହକ୍ ଦେଇ ଆସିଛ ତୁମେମାନେ—ଦବାକୁ ବାଧ୍ୟ, ଯେତେଦିନ ତୁମେ ମୋର ପ୍ରଜା ।

୨ୟ ପ୍ରଜା — କିନ୍ତୁ —

ଜମିଦାର — ସେ କିନ୍ତୁ ଫିନ୍ତୁ ମୁଁ କିଛି ଶୁଣିବି ନାହିଁ । ଏସବୁ କାମରେ ଖର୍ଚ୍ଚ ଲାଗି ତ ଟଙ୍କା ମିଳୁଛି ? ଏ ତ ତୁମମାନଙ୍କ ଧନରେ ଗଢ଼ା, ଆଜ ଜମିଦାରର ଦାବି ବେଳକୁ —

୧ମ ଗ୍ରାମବାସୀ — ଆପଣ ଜାଣନ୍ତି ନାହିଁ ଆଜ୍ଞା, ଏଇ ଅନୁଷ୍ଠାନ ଶହ ଶହ ଦ୍ୱେଷୀ, ଶୋଷୀ, ରୋଗୀ, ବାପ ମାଆ — ଛଡ଼ା ଜୀବନର —

ଜମିଦାର — ଓଃ, ଷ୍ଟପ୍ ଦୟା ! ଜମିଦାରର ବି ଜୀବନ ଅଛି, ଜମିଦାରର ଖର୍ଚ୍ଚ ଅଛି — ସେ ସବୁ ଛାଡ଼ । ମୁଁ କହିବାକୁ ଚାହେଁ, ମାଗଣା ପାଉଣା, ତୁମମାନଙ୍କୁ ଦବାକୁ ହେବ, — ଯେମିତି ଆଗେ ଦେଇ ଆସିଚ, ଆଜ ସେଇଟା ଆମର ଦାବୀ । ଦାବୀ ଆଦାୟ କରିବାର ଯଥେଷ୍ଟ କ୍ଷମତା ମୋର ଅଛି । ତୁମେମାନେ ଗୋଟେ ମେଳ ବାନ୍ଧି ଜିଦ୍ ଧରି ବସିଚ । ବେଶ୍, ଶେଷଥର ପାଇଁ ମୁଁ ତୁମକୁ କହି ଦେଉଚି — ତୁମମାନଙ୍କ ଏ ଲାଠିର ଧମକରେ ମୁଁ ଦବି ଯାଉନାହିଁ । ଶାସନ ମୋତେ ଜଣା । ହୁଏତ ମୋର ଦାବୀ ତୁମକୁ ମାନନେବାକୁ ହେବ, ନାଇଁତ ତୁମମାନଙ୍କୁ ଶାସନ ଶିଖାଇବାକୁ —

କୃଷକ ନେତା — ହଁ, ପ୍ରସ୍ତୁତ ଅଛନ୍ତି ଆପଣ । ତା ଆମେ ଜାଣୁଁ ଜମିଦାର ସାହେବ । ଆଉ ଆମେ ବି ଢେର୍ ଆଗରୁ ପ୍ରସ୍ତୁତ ଅଛୁଁ । ମାଆ ଭଉଣୀ ଯାହାର ଚୁଣ୍ଡା ଦରବା ଖଣ୍ଡିକରେ ଲଜ୍ଜା ଘୋଡ଼ାଏ, ଯେଉଁଠି ଘୋଡ଼ାଏ ଲଜ୍ଜା କାଢ଼ିଲା ଛୁଆର ହାତ ରେକ ଧରି, ମାଆ ତାର ପିଏ ପେଜ ତୋରାଣି, — ମାନ,

ମଡ଼ଚ, ଇଜ୍ଜତ ଯେଉଁଠି ବିକାହୁଏ ମୁଠାଏ ମୁଠାଏ ଘାତ ଲାଗି, – ସେଠାରେ ଲୋକେ ପ୍ରସ୍ତୁତ ନ ଥାନ୍ତି ଆଉ କେଉଁଥି-ପାଇଁ ? ସ୍ୱାର୍ଥ, ଅଧିକ, କ ଦଣ୍ଡର ଧମକ ଚାଲୁ ଦେଖାଇବେ ଆପଣ ?

ଜମିଦାର—ତା'ହେଲେ ପ୍ରସ୍ତୁତ ତୁମେମାନେ ? ବେଶ୍, ତୁମର ଏ ସବୁ ବାଜେ କଥାର ମୂଲ୍ୟ ମୋ ପାଖେ କିଛି ନାହିଁ, ମୁଁ ଜାଣେ ଶାସନ—ଆଉ ଦାବି ।

କୃଷକ ନେତା—ଆଉ ଆମେମାନେ ବି ଜାଣୁ—ଆମେ ଲହୁ ଦେଇ ଖଟୁ, ଆପଣଙ୍କର ମଉଜ୍ ମଜଲିସ୍ ଅପୂସ ପାଇଁ । ଅନ୍ଧ ଥିଲୁ ଆମେ, ଆଖି ଫିଟିଛି । ମାଆ ଭଉଣୀ, ଶିଶୁ ବାଳକ, ହଜାର ହଜାର ଅନାଥ, କଙ୍ଗାଳ, ଆମର ଗୁରୁ । ଆମେ ଅପରାଧୀ, – ଆମର ଅପରାଧ ?—ଆମେ ତାଙ୍କର ସହଧର୍ମୀ । ଜମିଦାରୀ ଲତା ଗଛକୁ ଖାଏ, ଆମେ ଜାଣୁ । ଆମେ ପ୍ରସ୍ତୁତ – କିନ୍ତୁ ଆପଣଙ୍କର ଦାବୀ ମାନିଯିବାକୁ ପ୍ରସ୍ତୁତ ନୋହୁଁ ।

ଜମିଦାର—ତା'ହେଲେ ତୁମେମାନେ ମାଗଣ ଦେବ ନାହିଁ ?

ସମସ୍ତେ—ନାଁ ।

ଜମିଦାର—ମୁଁ ଜାଣିବାକୁ ଚାହେଁ, ତୁମମାନଙ୍କୁ ଏପରି ମତେଇଛି କିଏ ? ତୁମ ପରି ଶ୍ରେଷ୍ଠ ଜୀବକୁ ଦଳିବା ମୋର କାମ ନୁହେଁ । ମୋର ଚାକିରି ଗୁହା,—କିଏ ସେ ତୁମର ନେତା ?

ଏ ମେଳର ମୂଳରେ କଏ ? ମୁଁ ତାକୁଇ ଖୁଜୁଛି, ତୁମମାନଙ୍କର ନେତା କଏ ?

କୃଷକ ନେତା— ନେତା ଆଉ କେହି ନୁହଁ ଜମିଦାର ସାହେବ—ନେତା ଏଇ ହଜାର ହଜାର ନରନାରୀଙ୍କ ଘନ ଘନ ଦୀର୍ଘ ଶ୍ୱାସ, ଆଉ ନେତା ଏଇ ଭୋକିଲା ପେଟର ଘାତ । ( ପେଟ ଦେଖାଇଲା )

ଜମିଦାର—ହୁଁ ବୁଝିଲି, ତା ହେଲେ ଶାସନ ଲାଗି, ମୋତେ ବାଧ୍ୟ କରୁଛ ? ବେଶ୍, କଏ ଅଛରେ ?

ପିଆଦା - ହଜୁର !

ଜମିଦାର— ଲଠିଆଳକୁ କହ, ଏମାନେ ଯେ ଯେଉଁଠି ଅଛନ୍ତି, ଜବତ କର ଘର ଲୁଟ୍ କର—ଘରେ ଘରେ ନିଆଁ ଲଗାଇଦିଅ । ଏମାନେ ବୁଝନ୍ତୁ—ଜମିଦାର ତା'ର ହକ୍ ଆଦାୟ କରି ଜାଣେ, ଶାସନ କରି ଜାଣେ, ସେ ଜମିଦାର—ଭିକାରି ନୁହେଁ,—ରଜା ।

କୃଷକନେତା—ଅସୀମ ଦୟା ଆପଣଙ୍କର, ଲଠିଆଳ ଦର୍କାର ନାହିଁ । ଆମେମାନେ ଗରିବ କଙ୍ଗାଳ । ଏଇ, କଙ୍ଗାଳ-ଗୁଡ଼ିକର ଶେଷ ଖୁଦ ମୁଠିକ ଆଉ ଆମ କଙ୍କାଳସାର ଗୁଳର ଶେଷ କୁଣ୍ଠାଖିଅକ ଜଳପୋଡ଼ି ଆମର ଜମିଦାର ପୁଅଙ୍କ ବାହାଘର ଭୋଜି, ରୋଷଣୀରେ ଲାଗୁ । ଏଇ ଭୋକିଲା ଆଖି ଆଗର ଧୂଳି ପାଉଁଶ ସବୁ କାଢ଼ିଦେଉ, ଆମେମାନେ କଅଣ । ସେଇତକ—ସେଇତକ ଆମେ ଖୁଜୁଁ, ତା' ନହେଲେ—

ଜମିଦାର - (ତା'ର ମୁଣ୍ଡ ଉପରେ ପିସ୍ତଲ ଦେଖାଇ) Stop (ଷ୍ଟପ୍) ( ଏତିକବେଳେ ଜନତା ଠେଲି ଜମୁନୀ ଆସି ମଝିରେ ଠିଆ

ହୋଇଗଲା । ଜମିଦାର ତଟସ୍ଥ ହୋଇ ପିସ୍ତଲ ତଳକୁ କରିଦେଲା ବେଳକୁ ଜୟନ୍ତୀ ଆଗରେ ଆସି ଠିଆ ହେଲା ରମା, ଜୟନ୍ତୀକୁ ହାତରେ ପଛକୁ ଠେଲି ) ।

---

## ଦ୍ୱିତୀୟ ଦୃଶ୍ୟ

ସେବାସଦନର ଅଗଣା — ( ବିଜୟା ଓ ରମା )

ବିଜୟା — କାହିଁକି ? ( ହସିଲା )

ରମା —( ଗମ୍ଭୀର ମୁହଁରେ ) ନାହିଁ ବିଜୁ ଦେଈ, ସତେ, ସେମିତି ମୋତେ ଡାକିବ ନାହିଁ ।

ବିଜୟା—ଆଉ କଅଣ ବୋଲି ତେବେ ଡାକିବ ?

ରମା — କାହିଁକି ? ରମା—ସମସ୍ତେ ଯାହା ବୋଲି ଡାକନ୍ତି ।

ବିଜୟା—ସମସ୍ତେ ଆଉ ମୁଁ, ଇଆ ମଝିରେ ଗୋଟେ ବଡ଼ ଫାଙ୍କ ଅଛି । ତା ଛଡ଼ା ସମସ୍ତଙ୍କର ଯେ ରମା, ସେ ମୋର ତ ଖାଲି ରମା ନୁହେଁ—

ରମା—ନାଁ, ସେ ଆପଣଙ୍କର ପ୍ରଜା ।

ବିଜୟା — ବେଶ୍, ସେଇଆ ହେଲା ଏବେ । ତେବେ ତ ମୋ ହୁକୁମ୍ ମାନିବ ତୁମେ । ଏଣିକି ମୁଁ ତୁମକୁ ଯେତେବେଳେ ଡାକିବ — ନୂଆବୋହୂ, ତୁମେ କହିବ —

ରମା — ନାଁ, ନାଁ ।

ବିଜୟା — ଦେଖୁଚ, ତା' ହେଲେ ତୁମେ ରାଜଭକ୍ତ ନୁହଁ — ଅବାଧ୍ୟ ପ୍ରଜା ।

ରମା—ଅନ୍ୟାୟ ହୁକୁମ ଦେଲେ ପ୍ରଜା ମାନବ କେମିତି ?

ବଜପ୍ପା—ମୁଁ ତ ଅନ୍ୟାୟ କରୁ କରୁନାହିଁ ।

ରମା—ଦେଖ, ବଡ଼ଲୋକ ଆଜ ଗରିବଙ୍କ ଭିତରେ ଗୁଳି, ଚଳନ— ସବୁ କଥାରେ ଗୋଟେ ଅମେଳ ।

ବଜପ୍ପା—ମନରେ ବ ଅମେଳ ନାଁ କଅଣ ?

ରମା—ମନଟା ତ ଆଜ ଦେହରୁ ଅଲଗା ନୁହେଁ । ମୁଁ ଏଇ ରମା ହୋଇଥିବ—କାହାର ଘର ଭାଙ୍ଗିବାକୁ, ସଂସାର ଜାଳିବାକୁ ମୋର ଜନ୍ମ ନ ହେଉ ।

ବଜପ୍ପା—ବେଶ୍ ତ, ଗୋଟେ ଘର ତୁମେ ପୋଡ଼ୁଚ ଯେ—

ରମା—ମୁଁ, ମୁଁ, ଘର ପୋଡ଼ୁଚି ? ନାଇଁ ତ । ପୋଡ଼ିଯିବ ବୋଲି ଆହୁରି—

ବଜପ୍ପା—ନିଜ ଘର ଗୁଡ଼ଉଚ—ଏଇ ତ ?

ରମା—(ନୀରବରେ ସୂତା କାଟିବାକୁ ଲାଗିଲା)

ବଜପ୍ପା—ଗୋଟେ ନଗଣ୍ୟ ମଫସଲରେ ଜନ୍ମହୋଇ, ତମେ କେମିତି ଯେ ଏତେ ବଡ଼ ବଡ଼ କଥା ସବୁ ଭାବ ପାରିଲ, ମୁଁ ତ ବୁଝି-ପାରୁନାହିଁ ମୋଟେ । ଆମର ସ୍କୁଲ କଲେଜରେ ଏଣୁ ତେଣୁ ଗଦା ଗଦା ବହି ଭିତରେ ଦେଖୁଚୁ—ଏଭଳି ମଣିଷ ହେବା ପାଇଁ ପାଠ ତ କରୁ ନାହିଁ । (ଅନନ୍ତ ହଠାତ୍ ଆସିଚ । ରମା ଓଢ଼ଣା ଟାଣି ସଂଯତ ହୋଇଗଲା)

ଅନନ୍ତ—ହେଲନାହିଁ ବଜପ୍ପା, ସମସ୍ତେ ଆମେ ଫାଟିଫୁଟି ଗଲୁ, ସେ କାହାର କଥା ଶୁଣିଲେ ନାହିଁ ।

ବଜପ୍ପା—କେମିତି ? ସବୁ ପଣ୍ଡ କରଦେଲେ ?

ଅନନ୍ତ—ହଁ, ମାଗଣ ଗୁଡ଼ଦେଲେ, ଖମାରରୁ ଧାନ ବ କାଢ଼ି କାଢ଼ି ଯେ ଯେମିତି ଗୃହିଁଲେ ଋଣ ପାଇଲେ, ଏମିତି ଏଇ ସେବା-ସଦନ ପାଇଁ ବ—

ବଳସ୍ୱା—ସେଇଆ ତ, ମୋ ଜାଣିବାରେ ତ ଗୋଟାଏ ଆପତ୍ତି ନଥିଲା ସବୁ ସେ ଜାଣିଛନ୍ତି, ଶୁଣିଛନ୍ତି ।

ଅନନ୍ତ—ଆଉ ଆପତ୍ତି ? କାହାର ?

ବଳସ୍ୱା—ମୋର,ଆପଣଙ୍କର, ଭାଇଙ୍କର, —ଆଉ ଆମ ସଙ୍ଗେ ସଙ୍ଗେ ଆଉ ଜଣଙ୍କର ଯେ, ତାର ଅବଶ୍ୟ ମୁହଁ ଫିଟୁନାହିଁ, ମାନେ ଗୋଟେ—

ଅନନ୍ତ—ଅର୍ଥାତ୍—

ବଳସ୍ୱା—ବୁଝିପାରଲେ ନାହିଁ ଆପଣ ? ଆମର ଏଇ ବଗୁଲି ନୂଆ ବୋହୂଟିର ମ—ମୋର ଭାଉଜ, ଭାଉଜ । ଆଃ, କି ମୋଟା ବୁଦ୍ଧି ଯେ ଆପଣଙ୍କର !

( ରମା ଉଠି ପଳାଇଗଲା )

ଅନନ୍ତ—ବଳସ୍ୱା ! ଛି, କଅଣ ଭାବିଥିବ ସେ କହ ନା ? ତୁମେ ବଡ଼—

ବଳସ୍ୱା—ପେଟ ଭିତର କଥାଟା, ମୁହେଁ ମୁହେଁ କହେଁ —ନା ?

ଅନନ୍ତ—ଥାଉ, ଥାଉ, ତୁମେ ଆଗ ବାପାଙ୍କୁ ବୁଝାଇ ଗଣ୍ଡେ ଭାତ ଖୁଆଇବାର ଯୋଗାଡ଼ କର ଦେଖି ।

ବଳସ୍ୱା—ଓ, ଏଇକଥା, ସେ କଅଣ ଖାଇବାକୁ ନାରାଜ ?

ଅନନ୍ତ—ଏକେ ତାଙ୍କର ମୁଣ୍ଡ ଭଲନାହିଁ, ତା ଉପରେ ଏଠି ସେ ଜଳଗ୍ରହଣ କରିବେ ନାହିଁ ବୋଲି ଜିଦ ଧରି ବସିଛନ୍ତି । ସବୁକଥା ତୁଟିଗଲା, ତଥାପି—

ବଳସ୍ୱା—ତଥାପି ତ ତୁଟିନାହିଁ ।

ଅନନ୍ତ — ଜୟନ୍ତୀ ପଠେଇଲ୍ ମୋତେ —

ବିଜୟା — ମୋ ପାଖକୁ ? ଆଜ୍ଞା ସେ ଗଲେ କୁଆଡ଼େ ?

ଅନନ୍ତ — ଥିଲ ତ ଖମାର ପାଖେ ।

ବିଜୟା — ଆଜ୍ଞା, ଗୁଲ୍ଲୁ, ଗୁଲ୍ଲୁ, ମୁଁ ସବୁକଥା ପକେଇ ଦଉଚି, ଆଜ କେଜ୍ଞ ଯେତେବେଳେ ନ କହିଲେ —

ଅନନ୍ତ — ସବୁକଥା ମାନେ ?

ବିଜୟା — ତାଙ୍କ ଖାଇବା କଥା, ଆଜ୍ଞା ଭାଇଙ୍କ ବାହାଘର କଥା, ସବୁ —

ଅନନ୍ତ --- ଅସମ୍ଭବ କଥା କଟ୍ଟୁ କହିବ୍ ନାହିଁ । ଏ କଥାରେ ସେ ରାଜ ହେଲାପର ଲାଗୁନାହିଁ ମୋତେ । ବଂଶ, ମାନ, ମହତ୍ତ୍ୱ —

ବିଜୟା — ଚୁଲିକି ଯାଉ । ଧନ, ବଂଶ, ମାନ — ଏସବୁ ନେଇ ଘରକରଣା ଚଳେ ନାହିଁ । ମଣିଷର ମଣିଷପଣିଆଁ ସିନା ଦେଖିବାର କଥା ! ବାପା ରମାକୁ ଜାଣନ୍ତି ନାହିଁ, ହେଲେ ଫେର୍ ମୁଁ ତ ବୁଝି ନଥିଲି । ଘୃଣା କରୁଥିଲି ଏଇ ଗରିବଗୁଣ୍ଡାଙ୍କୁ । ରମା ଆମ ଘରର ଯୋଗ୍ୟ ବୋହୂ, ଭାଇ ବହୁତ ଆଗରୁ ଦେଖି ପାରିଛନ୍ତି — ମଣିଷ ଭିତରେ ଦେବତା । ଗୁଲ୍ଲୁ, ଗୁଲ୍ଲୁ, ମୁଁ ଦେଖେଁ ।

(ଉଠି ବାହାରି ଚାଲିଗଲା)

(ବିଜୟା ଓ ଅନନ୍ତ ଚାଲିଯିବାର ଅଳ୍ପ ସମୟ ପରେ, ଗୋଟିଏ ବାଳିକା ଧୀରେ ଧୀରେ ସେଠାକୁ ଆସି ଚାରିପାଖେ ଦେଖିଲା କେହି ଅଛନ୍ତି କି ନାହିଁ, ତା' ପରେ କହିଲା )

ବାଳିକା — କେହି କୁଆଡ଼େ ନାହିଁ ! ଆମକୁ ଠକିଲି ରମା ଅପା, । ଦେବ, ଧଡ଼ିଆ, ଗୋପ, ରସ ହେରଆଙ୍କୁ ଡାକିଆଣି, — ବୋହୂଚୋର ଖେଳିବା ।

ପିଲାଏ—( ଆସି ) କାହିଁ, ରମା ଅପା କାହାନ୍ତି ?
ସର—ମୁଁ ଡାକି ଆଣୁଚି । ( ଦୌଡ଼ି ଚାଲିଗଲା ) ରମା ଅପା !
ରମା—( ଆସି ) କଅଣରେ ପିଲାଏ ?
ପିଲାଏ—( ରମାକୁ ବେଢ଼ି ) ଆମେ ସବୁ ଖେଳିବା ରମା ଅପା, ବୋହୂ ବୋହୂକା ।
ରମା—ବାବାଙ୍କୁ କହିଚ ? ରାଗ ହେବେଟି ।
ସମସ୍ତେ—ହଁ, ବାବା,—କହିଲେ ରମା ଅପାକୁ କହ ।
ରମା—ବୋହୂ କିଏ ହେବ ?
ସର—ରହ, ଗଣେ, ସମସ୍ତେ ଠିଆହୁଅ । (ରମା ଆଗେଇ ହୋଇଗଲା) ଉହୁଁ, ସେକଥା ହବ ନାହିଁ । ତମେ ଆସୁନ ରମା ଅପା !
ରମା—ଛି, ମୁଁ କଅଣ ଖେଳିବି ?
ସମସ୍ତେ—ନାହିଁ ନାହିଁ । ( ଟାଣିକରି ରମାକୁ ଠିଆ କଲେ ମଝିରେ )
ସର—ହୁଁ, ଏଥର ହେଲା । ( ଆଙ୍ଗୁଠି ଦେଖାଇ ଗଣିଲା )

ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ,
ତମର ଆମର ନାକ ମଇଁଚ
ନାଲି ଟହ ଟହ ରଜାଇ ହାଗ୍ଯ,
ଗୋଟିକ ଉପରେ ଗୋଟିଏ ଚଢ଼ ।

( ରମା ଉପରେ ଆଙ୍ଗୁଠି ପଡ଼ିଲା, ସମସ୍ତେ ତାଳିମାରି ହସି ଉଠିଲେ)
ସର—( ରମାକୁ ଟାଣି ) ଆସ ଅପା, ତମ ଆଖି ମୁଦେଁ, ଦେଖି ଭୁମ କାନ ।
ରମା—କାଇଁ ମ, ତୁ ଠିକ୍ କରି ଗଣ ନଉଁ କି କଅଣ !

ସର — ଆଉ କଅଣ ? ତମେ ତ ବୋହୂ ହେଇଚ — ନାଇଁ କେମେଡ଼େ ?
ସମସ୍ତେ—ହଁ, ହଁ, ବୋହୂ ରମା ଅପା !
ସର — ( ଟାଣି ବସାଇଲା ରମାକୁ, ଆଖିରେ କାନ ଭିଡ଼ିଲା )
ଜଣେ— ହଣିବଟି ଲୋ ସର, ଭଲକରି ଭିଡ଼ି ଦେଇଥା ।
ସର — ତୁମେ ସବୁ ଯା, ଲୁଚ, ମୁଁ ଭଲକରି ଭିଡ଼ି ଦଉଚି ମ ।

( ପିଲାମାନେ ଗୁଳିଗଲେ ଧୀରେ ଧୀରେ । ସର ହାତ ଛାଡ଼ିଦେଇ ହସି ହସି ଲୁଚିଗଲା । ରମା ଅଣ୍ଡାଳ ହେଉଥିଲା ବେଳେ ଆସି ପହଞ୍ଚିଛୁ ଜୟୀ । ସ୍ତବ୍ଧ ହୋଇଗଲା ତାଙ୍କ ଗୁଳି ରମାକୁ ଦେଖି, ହସି ହସି ପାଦ ଚପି ଚପି ଆଗେଇଲେ ସେ । ରମା ଅଣ୍ଡାଳହେଇ ଜୟୀକୁ ଧଇଁପକାଇ ହାତଗୁଡ଼ିଲା -- 'ଗୋଟିଏ' କହି ଚମକି, ଜୟୀ ରମାର ହାତ ଧରି କହିଲେ )

ଜୟୀ — ରମା !
ରମା—( ଆଖି ଫିଟାଇବାର ଓ ଜୟୀ ହାତରୁ ଛାଡ଼ିପିବାର ଚେଷ୍ଟା କଲା ) ମୁଁ ଜାଣି ନାହିଁ—ଖେଳୁ ଖେଳୁ—(ଲାଜ କଲା)
ଜୟୀ—ଧରା ପଡ଼ିଗଲ, ନା ?
ରମା—( ହାତ ଛଡ଼ାଇ ) ସାନବାବୁ, ଗରିବ ଲୋକ ମୁଁ, ଆପଣଙ୍କ ସାଙ୍ଗେ ମୋତେ ଏପରି ଦେଖିଲେ—

(କଥା ହୋଇ ଆସୁଥିଲେ ଜମିଦାର ଓ ହଜଯୁ )

ଜମିଦାର—ଦୋଷ କଅଣ ସେଥିରେ ?
ରମା—(ତ୍ରସ୍ତହୋଇ) ଗୁଡ଼ୁ, ବଡ଼ବାବୁ ଆସୁଛନ୍ତି କି କଅଣ ।
ଜୟୀ — ବାବା ? ( ଦୁହେଁ କବାଟ ଫିଟାଇ ଗୁଳିଗଲେ )
(ହଜଯୁ ଓ ଜମିଦାର ପ୍ରବେଶ କଲେ)

ବଜଯ୍ଯୁ।—ରକ୍ତ ମାଂସ ତ ଆଉ ଗରିବ ଲୋକର ଅଲଗା ନୁହେଁ ବାବା ! ଆମେ ଘର କରିବା ମନିଷକୁ ନେଇ ସିନା; ଧନକୁ ନେଇ ତ ନୁହେଁ ।

ଜମିଦାର—ସମସ୍ତେ ମୋତେ କାହିଁକି ଭୁଲ ବୁଝୁଚ,—ମୁଁ ଜାଣି ପାରୁନାହିଁ ତ !

ବଜଯ୍ଯୁ।—ଭୁଲ ବୁଝୁଛନ୍ତି; କିଏ ?

ଜମିଦାର – ଏଇ, ତୁମେମାନେ ସମସ୍ତେ –

ବଜଯ୍ଯୁ।—ବାଃ, ଆପଣ ତ ସବୁଦେଲେ ପ୍ରଜାଙ୍କୁ । ଗୋଳମାଳ ତୁଟିଯିବା ପରେ ବି ଆପଣ ଖାଉ ନାହାନ୍ତି, ପିଉ ନାହାନ୍ତି— ଗୋଟାଏ ଜିଦ୍ ଧରି ବସିଛନ୍ତି ।

ଜମିଦାର – ଏଇ ତ ! ବୁଝିଲି ସବୁ ଭୁଲ୍ । ପ୍ରଜାଙ୍କର ଦୁଃଖ ଦାବି କରିବାକୁ ତାଙ୍କୁ ସତ୍ୟାଗ୍ରହ କରିଆସେ, ମେଳ ବାନ୍ଧିଆସେ । ମୁଁ ଜମିଦାର, ରାଜା, ମତେ ତାଙ୍କ କଥା ଶୁଣିବାକୁ ହେବ, ଆଉ ମୋ କଥା ? ସେତିକିବେଳକୁ –

ବଜଯ୍ଯୁ।—ଆପଣଙ୍କର କୋଉ କଥା କିଏ ନଶୁଣିଛି ? ଆପଣ ଆଗେ ଖାଇ ସାରନ୍ତୁ ।

ଜମିଦାର—ଫେର୍ ତ ଭୁଲ୍ କରୁଚୁ । ଖାଲି ସମସ୍ତେ କହିଲେ ଖାଅ, ଖାଅ । ଆରେ ଦେଇବ କଅଣ ? କିଏ ଦବ ?

ବଜଯ୍ଯୁ।—କିଏ ଦବ ! ଆପଣଙ୍କୁ !

ଜମିଦାର—ହଁ, ହଁ, ମୋର ଅଛି କଅଣ ? ବୁଝି ନ ଥିଲି ଆଗେ, ଏବେ ବୁଝିଲିଣି । ଏ ସବୁର ଅଧିକାରୀ ମୋର ହଜାର ହଜାର ପ୍ରଜା, ସନ୍ତାନ—କେହି ମୋତେ ଦେଇଚି ? କେହି ମୋତେ ଡାକିଚି ? ଏମିତିକି ସାନବାବୁ ?—[ ହଠାତ୍ ଭିତରୁ

କବାଟ ଫିଟାଇ ବାହାର ଆସି ଜସ୍ନି ଜମିଦାରଙ୍କ ଗୋଡ଼ ଧରିଲେ )

ଜସ୍ନି—ମୋର ଦୋଷ କ୍ଷମା କରନ୍ତୁ, ବାପା !

ଜମିଦାର —(ଉଠାଇ) ଦୋଷ ! ଦୋଷ ଏକା ତ ତୋର ନୁହେଁ । ଆଉ ଜଣେ ଅଛି, ଯାହାର ଦୋଷ, ତୋଠୁ ବେଶୀ । କ୍ଷମା ବା ଦଣ୍ଡ ପାଇବାକୁ ହେଲେ—

ବଜସ୍ନା — ହଁ ବାପା, ଦୁହେଁ ପାଇବା ଉଚିତ । (କହୁଁ କହୁଁ ଭିତରକୁ ଯାଇ ରମାକୁ ଟାଣିଆଣି) ଛି, ସେଇଦିନ ପର ପେ'ର୍ ଲାଜ ?

(ରମା ଜମିଦାରଙ୍କୁ ପ୍ରଣାମ କଲା)

ଜମିଦାର —(ରମାକୁ ଉଠାଇ ଜସ୍ନି ଓ ରମାକୁ ଦୁଇ ପାଖରେ ଧରି) ହଁ, ଦୁହେଁ ତମେ ଦୋଷୀ—

ବଜସ୍ନା —ଯେହେତୁ ଦୁହେଁ ଘରଛାଡ଼ି ପଳେଇ ଆସିଛନ୍ତି ବାପା !

ଜମିଦାର—ହଁ, କ୍ଷମା ଦେବି ତୁମକୁ, ଏଠି ନୁହେଁ —ଘରକୁ ଚାଲ ।

(ସ୍ୱାମୀଜୀ ଆସିଛନ୍ତି, ହାତରେ ପ୍ରସାଦ—ପଛରେ ଅନନ୍ତ)

ଜମିଦାର—ଓଃ ସ୍ୱାମୀଜୀ, ଆଜ କଏ ଅନନ୍ତ ? ହଁ ଭଲ ବେଳରେ—

ସ୍ୱାମୀଜୀ — ଭଲ ଆଉ କଅଣ ବାବା ? ଆପଣ ବଦମାନ ଠାଆରେ ବସି ନାହାନ୍ତି, ଏଣେ ଗାଆଁ ସାରା ପ୍ରଜାମାନେ ବ—

ଜମିଦାର—ଓଃ ! ସେମାନେ ଖାଇ ନାହାନ୍ତି, —ଏତେବେଳଯାଏ ?

ସ୍ୱାମୀଜୀ—ଏଇଠି ସେବା-ସଦନରେ ପ୍ରଜାମାନେ ସମସ୍ତେ ଆପଣଙ୍କୁ ନିମନ୍ତ୍ରଣ କରି ରହିଁ ବସିଛନ୍ତି ।

ଜମିଦାର—ଓଃ, ତେବେ ଆଉ ଡେରି କାହିଁକି ? ମୋ କାମ ତ ସରିଯାଇଛି । ଦୁନିଆଁ ଟା ଭଙ୍ଗା —ଗଢ଼ା । ସ୍ୱାମୀଜୀ, ଆପଣଙ୍କର

ଘର ଭାଙ୍ଗି, ମୁଁ ଘର ଗଢ଼ିବାକୁ ବସିଛି । ମୋତେ ଏ ଘର ଗଢ଼ିବାକୁ ଅନୁମତି ଦିଅନ୍ତୁ ।

( ନଜର ଦୁଇ ପାଖରେ ରମା ଓ ଜୟନ୍ତୀକୁ ଧରି )

ସ୍ୱାମୀଜୀ—ଏଥିରେ ଦୁଃଖ କଅଣ ? ଏଇ ଘର ତ ଆପଣଙ୍କର ଭାଙ୍ଗିବ କାହିଁକି ? ମୋତେ ଏ ଘର ଗଢ଼ିବାକୁ ଅନୁମତି ଦିଅନ୍ତୁ । (ଅନନ୍ତ ବନଜ୍ୟାକୁ ଟାଣି) ଏ ଦୁହିଁଙ୍କୁ ନେଇ ସେବା-ସଦନରେ ମାଆଙ୍କର ସେବା ପୂଜା ଅକ୍ଷୁଣ୍ଣ ରହୁ ।, ଦେଶର ନିରାଶ୍ରୟ, ନିରନ୍ନ, ନିସ୍ୱ—ସମସ୍ତେ ମାଆଙ୍କ ଆଶ୍ରୟ;—ଦେଶ ମାତୃକାର ଆଶୀର୍ବାଦ ତଳେ ।

## ବନ୍ଦେ ମାତରମ୍

(ହଠାତ୍ ଘଣ୍ଟା ବାଜି ଉଠିଲା । ଦ୍ୱାରର ପରଦା ଅପସାରିତ ହେଲା)

ଆରତି ହେଉ ଗୁଡ଼ିଏ ବାଳକ ବାଳିକା ଗାଉଛନ୍ତି ମାତୃ-ବନ୍ଦନା—ସମ୍ମୁଖରେ ଦେଶ-ମାତୃକାର ଛବି ।

ଦ୍ୱାରବନ୍ଧ ଉପରେ ଲେଖାହୋଇଛି—

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

( ସମସ୍ତେ ମୁଣ୍ଡ ନୁଆଇଁ ଗାଇଲେ )

—ଗୀତ—

ବନ୍ଦେ ମାତରମ
ଶୁଭଦେ, ସୁଖଦେ, ଆଶ୍ରିତ ଜନ ବରଦେ—
ଜନନୀ ଉତ୍କଳ ବନ୍ଦେ, ବନ୍ଦେ ମାତରମ୍ ॥୦॥
ମାଳ୍ୟ ସିନ୍ଧୁ ଜଳ-ଧୌତ-ଚରଣ-ତଳ,
ଅମ୍ବର ଶ୍ୟାମଳ ପରିହିତ ଦେହା ।

କଟିତଟ ଗିରିବନ, ସୁମନ ମେଖଳତ,
ନଦୀ-ନିର୍ଝର ମାଳା କେଶୀ ।
ବନ୍ଦେ ମାତରମ୍ ।୧।

ଗଙ୍ଗା ତଟୁ ଗୋଦାବରୀ ଯା'ର,
ରାଜ୍ୟ ଥିଲା, ଥିଲେ, ବୀର ଅପାର,
ଅସ୍ତ୍ର ମୁନେ ଅରି ରକ୍ତ ଟୀକା ଦେଇ,
ଭେଟୁଥିଲେ ହସି ହସି ଯା' ବୀର ସୁତେ —
ଶୌର୍ଯ୍ୟ ବୀର୍ଯ୍ୟ'ଖଣି ଉତ୍କଳ ଜନନୀ,
ରଖ ମା, ଚରଣର ପ୍ରାନ୍ତେ ।
ବନ୍ଦେ ମାତରମ୍ ।୨।

— ଯବନିକା —

— —